# ମହାଯାତ୍ରା ।

—: ୪ :—

## ପ୍ରଥମ ସର୍ଗ ।

ପଙ୍କଜବାସିନି ଦେବି, ଉତ୍କଳଭାରତି
ସାରଳେ, କି କଲେ, କହ, କୁରୁଚୂଡ଼ାମଣି, (୧)
ଶୁଣିଲେ ଯେକାଳେ ବୀର ବାର୍ତ୍ତିକର-ମୁଖେ
ପ୍ରଭାସେ ଯାଦବଙ୍କର ଜ୍ଞାତି-କ୍ଷୟକାଣ୍ଡ (୨)
ମହାହବ, ଧୀରମଣି ଧୈର୍ଯ୍ୟ ଧର, ଅହା,
କେମନ୍ତେ ଶୁଣିଲେ ସେହି ଦାରୁଣ ବାରତା ?
କି କଲ, ଶୁଣିଣ ଚର-ହପଦ-ହାନବ
ଯଦୁବଂଶ-ଅବତଂସ ଯାଦବପତିର (୩)
ତ୍ରିଦିବ-ପ୍ରୟାଣ-ବାର୍ତ୍ତା—କହ କୃପା ବହି ।
ଯଦୁବଂଶ ଧ୍ୱଂସ ଶୁଣି କୁରୁକୁଳମଣି
ଯୁଧିଷ୍ଠିର, ଭ୍ରାତୃଙ୍କି କହିଲେ ସମ୍ବୋଧି

---

(୧) ସାରଳାଦେବୀଙ୍କ ମନ୍ଦିର ମହାନଦୀର ଅଦୂରବର୍ତ୍ତୀ ଝଙ୍କଡ଼ ଗ୍ରାମରେ ଅବସ୍ଥିତ । ଓଡ଼ିଶାରେ ଏହି ଦେବୀ ବିଦ୍ୟାର ଅଧିଷ୍ଠାତ୍ରୀରୂପେ ପ୍ରତିଷ୍ଠିତ । କୁରୁଚୂଡ଼ାମଣି—ଯୁଧିଷ୍ଠିର ।

(୨) ପ୍ରଭାସ—ଦ୍ୱାରକାର ଅଦୂରବର୍ତ୍ତୀ ସମୁଦ୍ରକୂଳସ୍ଥିତ ତୀର୍ଥ । ଋଷି-ଅଭିଶପ୍ତ ଯଦୁବଂଶୀୟମାନେ ଏହିଠାରେ ସୁରାପାନରେ ମତ୍ତ ହୋଇ ପରସ୍ପର ଯୁଦ୍ଧ କରି ନିହତ ହୋଇଥିଲେ ।

(୩) ଯାଦବପତି—ଶ୍ରୀକୃଷ୍ଣ ।

"ହେ ବୀର, ଦୁସ୍ତର-କୁରୁସମର-ସାଗରେ
(ତିମି ତିମିଙ୍ଗିଳ-ରୂପେ ଭ୍ରମିଲେ ଭୈରବେ
ଯହିଁ ମହାରଥପତି ଭୀଷ୍ମ ଦ୍ରୋଣ ଆଦି) (୧)
ସେ ମହାପୁରୁଷ ନିଜ କୃପା-ତରଣୀରେ,
ପାର କଲେ ପାଣ୍ଡବଙ୍କୁ କର୍ଣ୍ଣଧାର-ରୂପେ,
ଚଳୁଥିଲେ ଅନୁକ୍ଷଣ ଶ୍ରୀକରେ ଯାଙ୍କର
ନ୍ୟାୟବଳ-ବଳ-ରୂପେ କୋଟି କୋଟି ପ୍ରାଣୀ, (୨)
ଗଲେ ମର୍ତ୍ତ୍ୟଧାମ ତେଜି, ନିଜ ଧାମେ ସେହି
କେଶବ, କି ସୁଖେ ଆଉ ରହିବା ସଂସାରେ ?
ସଂସାରର ଲୀଳା ଖେଳା ସରିଲା ଆମ୍ଭର,
ସଂସାର-ବନ୍ଧନ-ବନ୍ଧେ ଜରଜର ହୋଇ
ସାରସତ୍ତ୍ୱ ପାସୋରଣ, ସାରଲୁଁ ଅସୂଷ;
ଦୁଃଖମୟ ଭବ ପିନ୍ନା, ମହାସୁଖ ବୋଲି
ବୋଲନ୍ତି ଜଗତେ ଯାକୁ, ଜଡ଼ିତ ସେ ସଦା
ମହାଦୁଃଖେ, ଅନେକ ସେ ଜଡ଼ିତ ତମସେ;
ହତ ହେଲେ ସୁଯୋଧନ କୁରୁକ୍ଷେତ୍ର ରଣେ, (୩)
ଜୟୀ ହୋଇ ଆମ୍ଭେ ତହିଁ ହେଲୁଁ ଜୀବନ୍ମୃତ; (୪)

(୧) ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ଦୁର୍ଯ୍ୟୋଧନପକ୍ଷୀୟ ପ୍ରଧାନ ଯୋଦ୍ଧା ଥିବାରୁ ରଣସମୁଦ୍ରର ତିମି ତିମିଙ୍ଗିଳରୂପେ ବର୍ଣ୍ଣିତ ହୋଇଅଛନ୍ତି ।

(୨) ନ୍ୟାୟବଳବଳ—ଶତରଞ୍ଜଖେଳର ପୁତ୍ତଳିକା ।

(୩) ସୁଯୋଧନ—ଦୁର୍ଯ୍ୟୋଧନ ।

(୪) ପାଣ୍ଡବପକ୍ଷ ଜୟୀ ହୋଇଥିଲେ ସତ୍ୟ, ମାତ୍ର ସେ ଜୟ ମଧ୍ୟ ଶୋଚନୀୟ

ପୁତ୍ର-ମିତ୍ର-ରକ୍ତ-ସ୍ରୋତେ ସନ୍ତର ସନ୍ତାପେ,
ସନ୍ତାପର ସିଂହାସନ ହେଲା ସିନା ଲାଭ;
ଭଙ୍ଗୁର ଭବର, ହାଇ, ସୁଖ ଏହିପର !
ଧନ୍ୟ ସେହି ଅତନ୍ଦ୍ରିତ ଋଷିବୃନ୍ଦ ଭବେ, (୧)
ବିଷୟ ବିମୁଖ ହୋଇ ସାଧନ୍ତି ଯେ ସଦା
ସୁଖବୃଦ୍ଧି ତୃଷ୍ଣାକ୍ଷୟେ, ତୃଷ୍ଣା-ଲୟେ ପୁଣି
ସୀମାତୀତ-ସୁଖରାଜ୍ୟେ ବିହରନ୍ତି ମୁଦେ, (୨)
ନିରୁଦ୍‌ବେଗେ ରହନ୍ତି ସେ କାଳକୁ ଅନାଇ,
ଏ ଜୀବ ନଶ୍ୱର ସ୍ଥିର, ସ୍ଥିରଟି ମରଣ,
ମାଟିର ଏ ଘଟ ନଷ୍ଟେ ମିଶିବ ମାଟିରେ,
ସର୍ବହର-କାଳ ମହାବଳଠାରୁ ବଳୀ !
କଠୋର ଏ ଧର୍ନୁ ତୋର, କଠୋର ଭୀମର

ହୋଇଥିଲା। ପାଣ୍ଡବମାନଙ୍କର ପ୍ରଧାନ ଆତ୍ମୀୟ ଯଥା ଦ୍ରୁପଦ, ବିରାଟ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଅଭିମନ୍ୟୁ, ଘଟୋତ୍କଚ, ଦ୍ରୌପଦୀଙ୍କର ପଞ୍ଚପୁତ୍ର ପ୍ରଭୃତି କୁରୁକ୍ଷେତ୍ରରେ ହତ ହୋଇଥିବାରୁ ଜୟୀ ପାଣ୍ଡବମାନେ ସୁଦ୍ଧା ଜୀବନ୍ମୃତ ପ୍ରାୟ ହୋଇଥିଲେ। ତେଣୁ ଯୁଧିଷ୍ଠିରଙ୍କ ସିଂହାସନ "ସନ୍ତାପର ସିଂହାସନ" ହୋଇଥିଲା ।

(୧) ଅତନ୍ଦ୍ରିତ—ଜାଗରୂକ, ସଂସାରମାୟାରେ ଯେମାନେ ମୁଗ୍ଧ ନୁହନ୍ତି ।

(୨) ବିଷୟୀଲୋକମାନେ ବିଷୟବୃଦ୍ଧିଦ୍ୱାରା ସୁଖୀ ହେବାକୁ ଚେଷ୍ଟା କରନ୍ତି । ଋଷିମାନେ ବାସନାକ୍ଷୟଦ୍ୱାରା ସୁଖୀ ହେବାକୁ ଚେଷ୍ଟା କରନ୍ତି । ବାସନା ଲୟ ହେଲେ ସୀମାବଦ୍ଧ ସୁଖ ଅସୀମ ହୁଏ । କୌଣସି ଶୂନ୍ୟଦ୍ୱାରା ବିଭକ୍ତ ହେଲେ ତାହାର ଭାଗଫଳ ଅସୀମ ଏହି ଗାଣିତିକ ସୂତ୍ର ସହିତ ଏହି ଭାବର ସାଦୃଶ୍ୟ ଅଛି ।

ମହାଗଦା, ଗ୍ରାସଇ ସେ ପକ୍ୱ-ରମ୍ଭା ପରି !
ଲଗାଇଛନ୍ତି ଫାଶ ସେହୁ ସମସ୍ତଙ୍କ ଗଳେ—
କି ରାଜା, କି ପ୍ରଜା, କିବା ବୀର, କିବା ଭୀରୁ,
ଗୁଣୀ, ଗୁଣହୀନ ଅବା ସୁନ୍ଦର, କୁତ୍ସିତ,
ଧନିକ, ନିର୍ଧନ, ଅବା ପ୍ରବଳ, ଦୁର୍ବଳ,
ସେ ଗୁପତ ଫାଶୁଁ କେହି ନୁହନ୍ତି ମୁକତ,
ଜନ୍ମିବା ଆଗରୁ ସେହି ଫାଶ ପିନ୍ଧି ଗଳେ
ଭୂମିଷ୍ଠ ହୁଅଇ ଜୀବ ଜନନୀ-ଜଠରୁ;
ନିଜ ଦିନ କ୍ଷଣ ଦେଖି ଦୁରନ୍ତ ସଂହାରୀ
ଅତର୍କିତେ ସଂହାରବ ଓଟାରି ସେ ଫାଶ, (୧)
କାହାର ବେଳକୁ କାଳ ଅନାଇ ନ ବସେ,
ପାସୋରଲେ ତାକୁ ସେହି କେବେ ନ ପାସୋରେ,
ଅଦ୍ଭୁତ ସେ ବୈର—ତାକୁ ରୋଧିଲେ ତୋରଣ,
ପାଚେର ଲଙ୍ଘିଣ ପୁରେ ପଶେ ଅନାୟାସେ,
ତାଲକ-ଜାଳିତ ଗୃହେ ପଶେ ଅଲକ୍ଷିତେ (୨)
ନ ଫିଟାଇ ସେ ତାଲକ, ଖଣ୍ଡଶିରୋମଣି;
ସେ ଆସି ଖୋଜିବା ଆଗୁଁ, ଏ ଭବର ମାୟା
ତେଜି, ହେ ବୀରେନ୍ଦ୍ର, ଚାଲ ଖୋଜିବା କାଳକୁ ।”

(୧) କାଳ କାହାର ସୁବିଧା ଅସୁବିଧା ସମୟ ଅସମୟ ପ୍ରତି ଦୃକ୍‌ପାତ କରେ ନାହିଁ । ନଜର ସମୟ ବୁଝି ପ୍ରାଣିମାନଙ୍କୁ କବଳିତ କରେ ।

(୨) ତାଲକ-ଜାଳିତ—ତାଲାହାସ ବନ୍ଦ ।

ବୋଇଲେ କନିଷ୍ଠୀ ଚତୁଂ ଅଗ୍ରଜ-ସମ୍ମୁଖରେ
"ହେ ଗୋସାଇଁ, ଛାଡ଼ି ନାହିଁ କାଳ କାହାରିକି,
ସମସ୍ତଙ୍କୁ ଲୋଡ଼ି ନଏ ଯଥାକାଳେ ଯେଣୁ,
ମୁ ଯାଇ ଲୋଡ଼ିବି ତାକୁ ତୁମ୍ଭରି ଗହଣେ;"
ଭୀମ, ବେନି ମାଦ୍ରୀସୁତେ କିରୀଟି-ବଚନେ
ଜଣାଇଲେ ଅଭିମତି ପରମ ଆଗ୍ରହେ,
ହିମାଦ୍ରି-ପ୍ରୟାଣେ ସର୍ବେ ବଳାଇଲେ ମନ ।
        ଶୁଣି ଏ ସଙ୍କଳ୍ପ, ଦେବୀ ଦ୍ରୁପଦନନ୍ଦିନୀ,
ସହଚରୀ ହେବାପାଇଁ ବାନପ୍ରସ୍ଥ ବ୍ରତେ,
କଲେ ନାନାମତେ ଅଳ ଭୂପତି-ସମ୍ମୁଖରେ;
କାନ୍ଦଣ କହିଲେ ଦେବୀ ଗଦଗଦ ଭାଷେ —
"ପାଣ୍ଡବର ବନ୍ଧୁ ବୋଲି ବାଜିଥିଲେ ବାନା
ଭୁବନେ ଯେ ମହାପ୍ରଭୁ, ସେ ପ୍ରଭୁ ବିହୁନେ
କେଉଁ ଲୋଡ଼ା ପାଣ୍ଡବର, ନାଥ, ଏ ସଂସାରେ ?
କେଉଁ ଲୋଡ଼ା ଏ ସଂସାରେ ପାଣ୍ଡବ ବିହୁନେ
ପାଣ୍ଡବ-ଶରଣା ଦୀନା ଦ୍ରୁପଦକନ୍ୟାର ?
କି ଲୋଡ଼ା ମୋହର ଅଶ୍ରୁସିକ୍ତ-ରାଜଭୋଗେ ?
କି ସୁଖ, ହେ ପାଣ୍ଡୁନାଥ, ଏ ଦଗ୍ଧପରାଣେ
ଗୃହେ ଥାଇ ? ଥାଉ ଗୃହ ଗୃହ-ସୁଖ ନେଇ,
ରାଜ୍ୟ ରାଜସୁଖ ନେଇ, ଏ ବେନିଙ୍କି ଛାଡ଼ି
ଛାୟା ପ୍ରାୟ ତୁମ୍ଭ ସଙ୍ଗେ ବିଚରିବି ବନେ,
ସୁଖୀ ଥିଲି ବନେ, ଦୁଃଖୀ ହେଲି ସିଂହାସନେ,

ଦୁଃଖୀ ପାଇଁ ସ୍ଥାନ କାହିଁ ସଂସାର-ଗହ୍ୱରେ ? (୧)
ଦୁଃଖୀ ଲୋଡ଼େ ନିକାଞ୍ଚନ, ଦୁଃଖିର ନୟନେ
ସଂସାର-ସମ୍ପଦ ସିନା ମହାବଡ଼ମ୍ବନା !
ନଳିନୀ-ନୟନେ, ନାଥ, ଯେସନେ ଚନ୍ଦ୍ରିକା;
ଅକ୍ଷମ, ସମ୍ପଦ, ଦୁଃଖ ମେଣ୍ଟାଇବା ପାଇଁ,
ପକାଏ କେବଳ ମାତ୍ର କଣ୍ଟକ ସେ ପଥେ
ସମବେଦନାର, ନାଥ, ଏହି ତାର ରୀତି ! (୨)
ଭେଦାଭେଦ ବାରବାର ପ୍ରାସାଦେ କୁଟୀରେ,
ସହିଛ ସେ ଦିନ ମୋର ତରଦନ ଲାଗି;
ନୁହଇ କେବଳ ମୁହିଁ ସମ୍ପଦ-ସଙ୍ଗିନୀ
ପାଣ୍ଡବର, ପୂର୍ବେ ଯଥା ସେବୁଥିଲି ବନେ
ଚରଣେ ତୁମ୍ଭର, ଏବେ ସେବିବ ସେମତେ,
ଏହି ଭିକ୍ଷା ମାଗେ ଦାସୀ ଶ୍ରୀପାଦେ ଗୋସାଇଁ;"
ନୃପମଣି ଯୁଧିଷ୍ଠିର ଯାଜ୍ଞସେନୀ-ବାଣୀ
ଶୁଣି ଯିବାପାଇଁ ତାଙ୍କୁ ଦେଲେ ଅନୁମତି ।
ତହୁଁ ରାଜସିଂହାସନେ ପରୀକ୍ଷିତଙ୍କର (୩)
ଅଭିଷେକ-ବିଧି ରାଜା ଯତନେ ସମ୍ପାଦି,
ବୈଶ୍ୟାଗର୍ଭଜାତ ଶାନ୍ତ ଧୃତରାଷ୍ଟ୍ରସୁତ

(୧) ସଂସାରରେ ସମସ୍ତେ ସ୍ୱାର୍ଥସଂଗ୍ରାମରେ ବ୍ୟତିବ୍ୟସ୍ତ । ଦୁଃଖିଦୁଃଖରେ ସହାନୁଭୂତି ଦେଖାଇବାକୁ କାହାର ଅବସର ନ ଥାଏ ।

(୨) ଯେମାନଙ୍କର ସମ୍ପଦ ଅଛି ସେମାନେ ନିଜ ଦୁଃଖରେ ଅନ୍ୟର ସହାନୁଭୂତି ପାଆନ୍ତି ନାହିଁ ।

(୩) ପରୀକ୍ଷିତ—ଅଭିମନ୍ୟୁ ପୁତ୍ର ।

ଯୁଯୁତ୍ସୁଙ୍କୁ ନିଯୋଜିଲେ ପ୍ରତିନିଧି ପଦେ, (୧)
ସାମ୍ରାଜ୍ୟଶାସନ ପାଇଁ ଶୈଶବେ ତାଙ୍କର;
ତହୁଁ ବୃଦ୍ଧା ସୁଭଦ୍ରାଙ୍କୁ ଘଇ ନରପାଳ
କହିଲେ "ଏ ଶିଶୁ, ଦେବ, ହେବ ଦଣ୍ଡଧର
ମୋର ଅନ୍ତେ, ହସ୍ତିନାର ରାଜ-ସିଂହାସନେ,
ଏକମାତ୍ର କୁଳାଙ୍କୁର ଏହି କୁରୁକୁଳେ !
ଗୋଟିଏ ପ୍ରସୂନ, ଅହା, ବଞ୍ଚେ ବିଶ୍ୱ-ଗ୍ରାସୀ-
କାଳ-ଦାବାନଳ-ମୁକ୍ତ କୁରୁବଂଶବନେ ! (୨)
ଭବତଳେ ଜୀବନ୍ତ ଏ ଦୟା-ନିଦର୍ଶନ
କାଳଦର୍ପହାରୀ ଦେବ ଦୀନବନ୍ଧୁଙ୍କର !
ପତି, ପିତୃ, ଭ୍ରାତୃଶୋକେ ଆତୁରା ଉତ୍ତରା
ଅଶ୍ୱତ୍ଥାମା-ଅସ୍ତ୍ରାନଳେ ତ୍ରସ୍ତ ହୋଇ ଯେବେ,
ନେଲେ ଶରଣ ସ୍ୱୀୟ ଶରଣ-ବତ୍ସଳ
ପାଦପଦ୍ମେ, ଚକ୍ରାୟୁଧ ଚକ୍ରର ଉଦ୍ଧାଳେ
ଝଟିତି ଅଚ୍ଛାଦି ସେହି ଦୁଃଖିନୀ ଗରଭ,
ବଞ୍ଚାଇଲେ ଶିଶୁସହ ଜନନୀ-ଜୀବନ,
ପାଳିବ ଏ ଶିଶୁ, ଦେବ, ପରମଯତନେ

(୧) ଯୁଯୁତ୍ସୁ—ଧୃତରାଷ୍ଟ୍ରଙ୍କ ପୁତ୍ର । କୁରୁଯୁଦ୍ଧ ଆରମ୍ଭ ସମୟରେ ଯୁଧିଷ୍ଠିର ଧର୍ମଡାକ ଦେବାରୁ ଧର୍ମଭୀରୁ ଯୁଯୁତ୍ସୁ ଦୁର୍ଯ୍ୟୋଧନଙ୍କ ପକ୍ଷ ପରିତ୍ୟାଗ କରି ନିଜ ଦଳସହିତ ପାଣ୍ଡବଦଳରେ ମିଶିଥିଲେ ।

(୨) ଯୁଦ୍ଧରେ ସମସ୍ତେ ନିହତ ହୋଇଥିବାରୁ ଏକମାତ୍ର ପରୀକ୍ଷିତ ହସ୍ତିନା-ସିଂହାସନର ଉତ୍ତରାଧିକାରୀ ଥିଲେ ।

ବୃନ୍ଦାଶ୍ରମେ, ମୋର ଏହି ଅନ୍ତିମ ନିୟୋଗେ । (୧)
ସୁଭଦ୍ରାଙ୍କୁ ଏହିରୂପେ ଆଦେଶି ନୃମଣି,
ଆଚରିଲେ ଶ୍ରାଦ୍ଧବିଧି ମାତୁଳବଂଶର,
ଉଗ୍ରସେନ, ବସୁଦେବ, ଆଦି ଗୁରୁଜନେ
ବହିତ ବିଧାନେ ଦେଲେ ପ୍ରେତ-ଜଳାଞ୍ଜଳି; (୨)
ଅସ୍ତ୍ରଗୁରୁଙ୍କର ଗୁରୁ ବୃଦ୍ଧ ଭରଦ୍ୱାଜ; (୩)
ବଦରିକାଶ୍ରମବାସୀ ଋଷି ଦ୍ୱୈପାୟନ, (୪)
(ଭାରତ-ଭାରତୀ ଯାଙ୍କ ରସନା-ନର୍ତ୍ତକୀ)
ସୂର୍ଯ୍ୟ-ଶିଷ୍ୟ ଯାଜ୍ଞବଲ୍କ୍ୟ ସଂହିତା-ପ୍ରଣେତା,
ଯଜ୍ଞରତ ଜନକର ଗୁରୁ ଦ୍ୱିଜବର, (୫)
ମାର୍କଣ୍ଡେୟ କଳ୍ପଜୀବୀ; ଦେବର୍ଷି ନାରଦ
ଅନନ୍ତ ଅନନ୍ତ-ନାମ-କୀର୍ତ୍ତନ-ରସିକ, (୬)
ଯା ସଙ୍ଗୀତେ ପ୍ରେମୋଲ୍ଲାସେ ପ୍ରସ୍ଫୁରଣ ଛଳେ
ବ୍ୟୋମାଙ୍ଗେ ଲଭନ୍ତି ନବେ ଜ୍ୟୋତିଷ୍କ-ମଣ୍ଡଳୀ,
ଜ୍ଞାନୀନ୍ଦ୍ର ବାଦରାୟଣି ଆଦି ମୁନିଗଣେ (୭)
ମହାଦରେ ଡାକି, ରାଜା ଦେଲେ ନାନା ଦାନ—

(୧) ଅନ୍ତିମନିୟୋଗେ—ଶେଷ ଆଦେଶରେ ।
(୨) ଯୁଧିଷ୍ଠିର ଯଦୁବଂଶୀୟ ବସୁଦେବ ପ୍ରଭୃତିଙ୍କର ଭଣଜା ଥିଲେ ।
(୩) ଭରଦ୍ୱାଜ ପାଣ୍ଡବମାନଙ୍କର ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟଙ୍କର ଗୁରୁ ଅର୍ଥାତ୍ ପିତା । (୪) ଦ୍ୱୈପାୟନ—ବ୍ୟାସ । ମହାଭାରତପ୍ରଣେତା ।
(୫) ଜନକଙ୍କ ଦୀକ୍ଷାଗୁରୁ ଯାଜ୍ଞବଲ୍କ୍ୟ ଭାରତବର୍ଷର ଜଣେ ପ୍ରଧାନ ସ୍ମୃତିକାର ।
(୬) ଅନନ୍ତ—ଈଶ୍ୱରଙ୍କ ନାମକୀର୍ତ୍ତନରେ ରତ ।
(୭) ବାଦରାୟଣି—ଶୁକଦେବ ।

ଗୋ, ଭୂମି, କାଞ୍ଚନ, ରତ୍ନ, ବସ୍ତ୍ର, ଆଭରଣ,
ଗଜ, ବାଜି, ମହୋଜ୍ଜ୍ୱଳ ସ୍ୟନ୍ଦନାଦି କରି,
ସ୍ୱର୍ଗତ ଶାରଙ୍ଗଧର କେଶବ ଉଦ୍ଦେଶେ; (୧)
କୁଳଗୁରୁ କୃପାଚାର୍ଯ୍ୟ-ପଦେ ପରୀକ୍ଷିତେ (୨)
ସମର୍ପି କହିଲେ "ଗୁରୋ, ଦାସ-ଅନୁଦାସ
ଏ ତୁମର, ଦୟା ବହି ବାଲ୍ୟେ ଯଥା ମୋତେ
ଶିଖାଇଲ ଧନୁର୍ବେଦ, ଏହାକୁ ସେପରି
ଶିଖାଇବ, ଏହି ଭିକ୍ଷା ମାଗୁଛି ପଦ୍ୟରେ ।
ଅହେ ରଣବିଶାରଦ-ସେନାପତିଦଳ,
ତୁମ୍ଭ ବାହୁ-ଛାୟା-ତଳେ ବଢୁ ଏ କୁମର
ମଣ୍ଡିବାକୁ ହସ୍ତିନାର ଶୂନ୍ୟ-ସିଂହାସନ,
ରଣମୁଖେ ଅଗ୍ରଯାୟୀ ଥିଲା ଯେ ତୁମ୍ଭର,
ଯା ବିକ୍ରମେ ବିଚଳିତ ହୋଇ ରଣସ୍ଥଳେ,
ଲଂଘିଣ ସମର-ଧର୍ମ ଆଚାର୍ଯ୍ୟ ଆପଣେ
ଅସମ ସମରେ ଯାର ସାଧିଲେ ନିଧନ,
କୁରୁସେନା-ବିମର୍ଦ୍ଦନ, ପରବ୍ୟୂହ ଭେଦୀ
ମହାରଥ-ଅଭିମନ୍ୟୁ-ହୃଦୟ-ଶୋଣିତ
ବହୁଛି ଏ ଶିଶୁ ଦେହେ, ଏହା ନ ବିଚାରି
ରଖିବ ଶିଶୁକୁ ନିଜ ଦେହ-ଆବରଣେ,

(୧) ପରଲୋକଗତ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ । କୃଷ୍ଣଙ୍କର ଧନୁର ନାମ "ଶାର୍ଙ୍ଗ" ଥିଲା ।

(୨) କୃପାଚାର୍ଯ୍ୟ—ଦ୍ରୋଣଙ୍କ ଶ୍ୟାଳକ । ପାଣ୍ଡବମାନଙ୍କର ଅନ୍ୟତର ଅସ୍ତ୍ରଗୁରୁ ।

କେତେ କେତେ-ପତ୍ର ଯଥା, ପ୍ରମାଦେ ସଙ୍କଟେ;
ସାଙ୍ଗ ହେଲା ଆଜିଠାରୁ ରାଜପଣ ମୋର,
ସମସ୍ତଙ୍କୁ କରଯୋଡ଼ି ମାଗୁଛୁ ମେଲାଣି,
ବନେ ଚର ଆଚରିବି ଆରଣ୍ୟକ-ବ୍ରତ ।"
ବିଷଣ୍ଣ ସରବେ ହେଲେ ରାଜାଙ୍କ ବଚନେ,
"ରାଜ୍ୟ ତେଜି ଯିବେ ରାଜା" ଏ ବାର୍ତ୍ତା ନବରେ,
ନବରୁ ନଗରେ, ତହୁଁ ବ୍ୟାପି ଜନପଦେ,
ବୁଡ଼ାଇଲା ଶୋକଭ୍ରାସେ ସମଗ୍ର-ମେଦିନୀ,
ବୋଲା ବୋଲି ହେଲେ ଲୋକେ "ଯାର ଛତ୍ର-ତଳେ
ଜାଣୁ ନ ଥିଲେଟି ଜନେ, ଜନ୍ଦୋଷ ଯାବତ,
ରାଜଦଣ୍ଡ ଅଛୁ ବୋଲି; ଦୋଷୀ ଦେଖି ପୁଣି,
ନ ସହାରୁ, ବିନ୍ଧୁଥିଲା ସଂସାର ମାତର
କରୁଣା-କୋମଳ-ନ୍ୟାୟ୍ୟ ଯାର ଏ ଜଗତେ,
ତିନିଲୋକେ ପୁଣ୍ୟଶ୍ଳୋକ ସେହି କୁରୁମଣି
ଯିବେ କି ଅମ୍ଭଙ୍କୁ ଛାଡ଼ି ? ଅହୋ ରେ ଦଇବ !
ସତେ କି ସାଧିବୁ ଦାଉ ତୁହି ଏତେଦିନେ ?
ହେ ଧର୍ମ, ହେ ସତ୍ୟ, ତୁମ୍ଭେ ହେଲଟି ଅନାଥ !
କେ ଆଉ ନିଷ୍କାମେ ଧନ ପ୍ରାଣ ମାୟା ତେଜି,
ତୁମ୍ଭଙ୍କୁ, ତୁମ୍ଭରି ଲାଗି, ଭଜିବ ଏ ଭବେ ?
ଦୟା, କ୍ଷମା, ତୁମ୍ଭେ ଏବେ ହେଲଟି ଅବୀର !
ଅବୀର ମା ବସୁନ୍ଧରା !—ଅବୀର୍-ସନ୍ତତ
ହେଲେ ଯିବା ଏତେଦିନେ ଦୀନହୀନ ପ୍ରଜା;'

ଚଉଦିଗୁଁ ପ୍ରଜାପୁଞ୍ଜ ଆସି ଦଳେ ଦଳେ
( ଚଉପାଶୁଁ ହ୍ରଦମୁଖେ ଗିରିସ୍ରୋତ ଯଥା )
ନଗର ପ୍ରାଙ୍ଗଣ-ପ୍ଲାବି ଲୋତକ-ପ୍ଲାବନେ
ନୃପଙ୍କ ସମ୍ମୁଖେ କଲେ ରହିବାକୁ ଅନ୍ଧ,
ଭବର ଭଙ୍ଗୁରଭାବ ଜାଣି ଯୁଧିଷ୍ଠିର
ନିବେଶିଣ ଥିଲେ ଚିତ୍ତ ସୁଚେତା ଶାଶ୍ୱତେ, (୧)
ତେଣୁ ପ୍ରଜାଙ୍କର ମାୟା ତୁଟିଲେ ସହଜେ ।
  ସମାଦରେ ଯଥାବିଧି ଆମନ୍ତ୍ରି ଭୂପତି
ସାମନ୍ତ-ରାଜନ୍ୟ-ଦଳେ, ପୌର, ଜାନପଦେ,
ମହାଯାତ୍ରା ଲାଗି ତହୁଁ ହେଲେ ସଜ୍ଜୀଭୂତ,
ଶୁଦ୍ଧଭାବେ କୃଷ୍ଣାସହ; ବର୍ଗଙ୍କୁ ଉତାରି
ରତ୍ନମୟ ଶିରସ୍ତ୍ରାଣ, ସାରସନ, ଭୂଷା,
ବସନ ଭାସ୍ୱର ଯେତେ ଗଢ଼ା ସୌରକରେ,
ପିନ୍ଧିଲେ ବଳ୍କଳ ରାୟେ; ଭୀମ, ସବ୍ୟସାଚୀ,
ଯାମଳ ସୋଦର ବେନି, ପାଞ୍ଚମହାଦେଈ
ଦ୍ରୁପଦଦୁଲଣୀ ପଦ୍ମପଲାଶ-ଲୋଚନା
ବଳ୍କଳୀ ରାଜାଙ୍କୁ ଦେଖି, ସର୍ବେ ହୃଷ୍ଟମନେ
ସଜ ହେଲେ ସେହିକ୍ଷଣି ଆରଣ୍ୟକ-ବେଶେ,
ପୂର୍ବେ ଦ୍ୟୂତେ ପରାଜିତ ହୋଇ ପଞ୍ଚଭାଇ
କୃଷ୍ଣା ସଙ୍ଗେ ଯେଉଁ ବେଶେ ବାହାରିଣ ଥିଲେ

( ୧ ) ଶାଶ୍ୱତେ—ଭଗବାନଙ୍କ ପ୍ରତି ।






ପୁରୁଁ, ପୁରନାରୀବ୍ରଜ ପୁଣି ସେହି ବେଶେ
ଦେଖି ସର୍ବେ ଜରଜର ହେଲେ ମହାଶୋକେ,
ମର୍ମଭେଦୀ ହାହାକାର ପୂରିଲା ନଗର,
ମାତ୍ର ଏ ବଷାଦେ ଭାଗୀ ନୋହିଲେ ଯାତ୍ରିକେ,
ଥୋଇଥିଲେ ମନ ଯେଣୁ ମାୟା-ମୋହ-ପାରେ
ତାମସ-ପ୍ରପଞ୍ଚାତୀତ ଅନାମୟ ଧାମେ;
ଆଚରି ସେ କାଳୋଚିତ-ଯଜ୍ଞ-ପାଣ୍ଡୁସୁତେ
ଶୋଭନା-ହସ୍ତିନା-ରୌପ୍ୟ-ରସନା-ଜାହ୍ନବୀ-
ଜଳେ ଯଜ୍ଞାନଳ ତହୁଁ କଲେ ଜଳସାତ;
କୃଷ୍ଣା ସଙ୍ଗେ ପଞ୍ଚଭାଇ ବାହାରିଲେ ପୁରୁ,
ଦିଶିଲା ଅନାଥା ପ୍ରାୟ ହସ୍ତିନା ନଗରୀ
ବିକଳା, ଯେସନ ରାହୁଗ୍ରସ୍ତ-ଶଶିକଳା;
ରୌଦବେଗେ ଉଠିଲା ମହାଶୋକର ଚହଳ;
ଉଦ୍‌ବେଳ ସାଗର ପ୍ରାୟେ ଲକ୍ଷ ଲକ୍ଷ ପ୍ରଜା
ଗଳଦଶ୍ରୁନେତ୍ରେ, ପୁଣି ଦୀନହୀନ-ବେଶେ
ଉଚ୍ଚୈଃସ୍ୱରେ କାନ୍ଦି ସର୍ବେ ଚଳିଲେ ଗହଣେ;
ପାଦଚାରୀ ବଳ୍କଳିନୀ ଦ୍ରୌପଦୀଙ୍କି ଦେଖି
ବକ୍ଷେ କର ମାରି ଉଚ୍ଚେ କାନ୍ଦିଲେ ଅଙ୍ଗନା
ଅଳିନ୍ଦେ, ଗବାକ୍ଷେ, ଦ୍ୱାରେ, ପ୍ରାସାଦଶିଖରେ ।
ଚାରି ସହୋଦର, ପୁଣି ଯାଜ୍ଞସେନୀ ମେଳେ
ଚଳିଲେ ରାଜେନ୍ଦ୍ର ତେଜି କୁଳ-ରାଜଧାନୀ;
ସ୍ନେହବଶେ ଶ୍ୱାନଟିଏ ଚଳଇ ପଶ୍ଚାତେ,




ଫିରିଲେ ରାଜେନ୍ଦ୍ର, ସଙ୍ଗ ଲକ୍ଷ ଲକ୍ଷ ପ୍ରଜା,
ପାତ୍ର, ମନ୍ତ୍ରୀ, ସଭାସଦ, ନଗର-ନିୟୋଗ,
ବହୁଦୂର ଯାଇ ସଙ୍ଗେ ବାହୁଡ଼ି ଯିବାକୁ
ରାଜାଙ୍କ ବିଦାୟବାଣୀ ଶୁଣି ପୁନଃପୁନଃ,
"ଅଉ ଖଣ୍ଡେ" "ଅଉ ଖଣ୍ଡେ" କହି କଲେ ଅଳି
ବାଷ୍ପାକୁଳ-ନେତ୍ରେ, ବାଷ୍ପ-ଗଦ୍ଗଦ ବଚନେ;
ପୋଷିଥିଲେ ଆଶା ଅବା ଫେରିବେ ପାଣ୍ଡବେ
କୁରୁପୁରେ, ବୃଥା ଆଶା ! ଫେରଇ କି କେବେ
ସିନ୍ଧୁଗାମୀ ସ୍ରୋତ, ଅବା ରୁକ୍ମଣୀର ରଥ ?
ରବିଙ୍କି ଦିନାନ୍ତେ ଦେଖି ଅସ୍ତାଚଳ-ଚୂଡ଼େ,
କୃପ ଯୁଯୁତ୍ସୁଙ୍କ ସଙ୍ଗେ ସଙ୍ଗେ ବାହୁଡ଼ିଲେ
ମହାଶୋକେ, ରାଜଶୂନ୍ୟ ପୁରେ ପୁରବାସୀ;
ଉଲୂପୀ ନାଗେନ୍ଦ୍ର-ଜେମା ଜହ୍ନୁସୁତା-ସ୍ରୋତେ
ଝାସିଣ, ପଶିଲେ ତହୁଁ ଅତଳ ପାତାଳେ, (୧)
ବାହୁଡ଼ିଲେ ପତିଶୋକେ ବିଧୁରା ସୁନ୍ଦରୀ
ଚିତ୍ରାଙ୍ଗଦା ମଣିପୁରେ ନିଜ ଦଳବଳେ । (୨)

(୧) ଉଲୂପୀ—ନାଗକନ୍ୟା, ଅର୍ଜ୍ଜୁନପତ୍ନୀ ।

(୨) ଚିତ୍ରାଙ୍ଗଦା—ମଣିପୁରଜେମା, ଅର୍ଜ୍ଜୁନପତ୍ନୀ ।



## ଦ୍ୱିତୀୟ ସର୍ଗ ।

ତେଜି ପ୍ରପଞ୍ଚର ମାୟା, ତହୁଁ ପଞ୍ଚଭାଇ (୧)
ପାଞ୍ଚାଳୀ ସହିତେ ଅଗେ ଗଲେ ପୂର୍ବାଞ୍ଚଳେ,
ତୀର୍ଥାଟନ-ମହାବ୍ରତ ମନାସି ମାନସେ,
ଏକମାତ୍ର ଧର୍ମ୍ମୋନ୍ମୁଖ ହୃଦୟ ତାଙ୍କର,
ଆତ୍ମା ପରମାତ୍ମା ପ୍ରତି କରନ୍ତେ ଧାବିତ;
ବିଶ୍ୱାସରେ ମହାବଳୀ, କ୍ଳେଶ ମଣି ସୁଖ,
ଭ୍ରମିଲେ ଅସଂଖ୍ୟ ଗିରି, କାନ୍ତାର, କନ୍ଦର,
ନଦ, ନଦୀ, ମହାରଣ୍ୟ; ଅଗ୍ରେ ଯୁଧିଷ୍ଠିର
ଧର୍ମ୍ମବୀର, ଋତ୍ୱିଗୁଣେ ଅଗ୍ରଣୀ ଜଗତେ,
ବୟୋଜ୍ୟେଷ୍ଠ, ଗୁଣଜ୍ୟେଷ୍ଠ, ଶିଷ୍ଟ, ଶାନ୍ତମତି,
ତାଙ୍କ ପଛେ ଭୀମ, ଭୀମ ପଛେ ଧନଞ୍ଜୟ
ଧନୁଷ୍ପାଣି, ଶର-ପୂର୍ଣ୍ଣ-ଦିବ୍ୟ-ତୂଣ-ଧାରୀ,
ଯେଣୁ ସେହି ସବ୍ୟସାଚୀ ଧନୁତୂଣମାୟା
ଛୁଟି ନ ପାରଣ, ସଙ୍ଗେ ଅଣିଥିଲେ ବଳୀ
ସେହି ଧନୁ, ସେ ତୂଣୀର ବୈରାଗ୍ୟ-ବିରୋଧୀ,
ଚାଲନ୍ତି ଫାଲ୍‌ଗୁନୀ ପଛେ ମାଦ୍ରୀସୁତ ବେନି,
ତାଙ୍କ ପଛେ ଯାଜ୍ଞସେନୀ ଗଜେନ୍ଦ୍ର-ଗାମିନୀ,

(୧) ପ୍ରପଞ୍ଚ—ସଂସାର ।

ରମଣୀସୀମାନ୍ତ-ରେଖା ସମା ମହୀତଳେ,
ସ୍ନେହଗୁଣେ ବଦ୍ଧ-ଧ୍ୟାନ ଗୃଲେ ସ୍କନ୍ଧପଟ୍ଟେ;
ମଥୁରା କଲୁଷ-ହରା ଜଗତୀରୁ ଯହିଁ (୧)
ଦେଖୁଥିଲେ କୁତୂହଳେ ଯାଦବୀ ଯୁବତୀ
ଘନ-ନୀଳଦ୍ୟୁତି ଚକ୍ରବାକିନୀ ଯମୁନା,
ହେମ-ଭକ୍ତି-ମତୀ କି ସେ ଅବନୀର ବେଣୀ; (୨)
ପ୍ରୟାଗ, ପାବନ ଗଙ୍ଗା-ଯମୁନା ସଙ୍ଗମେ,
କଳ୍ପସ୍ଥାୟୀ-କଳ୍ପବଟ ଛାୟାରେ ଶୀତଳ,
ପତିଙ୍କ କୁଶଳ-ଭିକ୍ଷା ପତିପ୍ରାଣା ସୀତା
କରିଥିଲେ ଯାର ମୂଳେ ବନଯାତ୍ରା-କାଳେ;
ହରଶୂଳ-ଶିଖୋପରେ ପୁରୀ ବାରାଣସୀ,
ହର-ଶୈଳୋପମ ଯହିଁ ତୁଙ୍ଗ ସୌଧପନ୍ତି
ଦେଖନ୍ତି ବିମ୍ବିତ ମୁଖ ଜାହ୍ନବୀ-ଦର୍ପଣେ; (୩)
ସରଯୂର ସ୍ରୋତେ ପୂତ ସାକେତ ନଗରୀ
ରଘୁକୁଳ-ରାଜଧାନୀ ଧନ୍ୟା ଧନ୍ୟ ଗୀତେ; (୪)
ବରେଣ୍ୟ ନୈମିଷାରଣ୍ୟ, ପର୍ଣ୍ଣାଶନ-ବ୍ରତୀ (୫)

(୧) ଜଗତୀ—ଚନ୍ଦ୍ରଶାଳା । (୨) ନୀଳଯମୁନା ଅବନୀର ବେଣୀପରି, ପୀତଚକ୍ରବାକମାଳା ସେହି ବେଣୀର ସୁବର୍ଣ୍ଣରଚନା ପରି ।

(୩) କାଶୀ ହରଶୂଳଶିଖା ଉପରେ ଅବସ୍ଥାପିତ ବୋଲି ପୌରାଣିକ କିମ୍ବଦନ୍ତୀ ଅଛି ।

(୪) ସାକେତ—ଅଯୋଧ୍ୟା, ରାମାୟଣରୂପିଧନ୍ୟଗୀତଦ୍ୱାରା ଯାହା ଧନ୍ୟା ଅର୍ଥାତ୍ ପ୍ରତିଷ୍ଠିତା । (୫) ନୈମିଷାରଣ୍ୟ—ଅଧୁନାକ ନାମ ନିମଷାର ।

ଯତୀନ୍ଦ୍ର ଅଧ୍ୟାତ୍ମବାଦୀ ଅବିରତେ ରତ
ଯହିଁ ଆଧ୍ୟାତ୍ମିକ ଯାଗେ, ହୃଦ ବେଦି ଯହିଁ,
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀସ୍ୱରୂପିଣୀ,
ତପ ବହ୍ନି, କାମ ଆଜ୍ୟ, କ୍ରୋଧ ଯଜ୍ଞପଶୁ,
ଧୈର୍ଯ୍ୟ ଯୂପ, ତ୍ୟାଗ ହୋତା, ବଚନ ଉଦ୍ଗାତା,
ସୋମରସ ସୁମଧୁର ଭକ୍ତି ଅଧୋକ୍ଷଜେ;
ଗୟାପୁରୀ ପ୍ରତିଷ୍ଠିତ ଗୟାସୁର-ଶିରେ,
ଯହିଁ ବହେ ଫଲ୍‌ଗୁ ଅନ୍ତଃସଲିଳା ତଟିନୀ;
ରାଜଗିର ବିରାଜିତ ଶତ ପ୍ରସ୍ରବଣେ, (୧)
ଜରାସନ୍ଧେ ବଧିଥିଲେ ଗିରିଦୁର୍ଗେ ଯହିଁ,
ବାୟୁସୁତ ବୃକୋଦର କେଶବ-କୌଶଳେ;
ମହାଶକ୍ତି-ପୀଠ ପୂତ ଭାଗୀରଥୀତୀରେ,
ବିରାଜନ୍ତ ଯହିଁ ଦେବୀ ନୃମୁଣ୍ଡମାଳିନୀ; (୨)
ଲୌହିତ୍ୟ-ତରଙ୍ଗେ ଧୌତ ପ୍ରାଗ୍‌ଜ୍ୟୋତିଷପୁରୀ,
ଲଭନ୍ତି ଅଭିଖ୍ୟା ଯେହୁ କାମାଖ୍ୟା-ପ୍ରସାଦେ; (୩)
ପାଣ୍ଡୁଜଳାରଣ୍ୟ-ମଧ୍ୟେ କପିଳ-ଆଶ୍ରମ, (୪)
ମହର୍ଷିଙ୍କ ରୋଷାନଳେ ହୋଇ ଭସ୍ମୀଭୂତ

(୧) ରାଜଗିର—ବେହାରର ଅନ୍ତର୍ଗତ । ଜରାସନ୍ଧଙ୍କ ଗଡ଼ ଏହିଠାରେ ଥିବାର କିମ୍ବଦନ୍ତୀ ଅଛି । (୨) କାଳୀଘାଟ, କଲିକତାର ନିକଟବର୍ତ୍ତୀ ।
(୩) ଲୌହିତ୍ୟ—ବ୍ରହ୍ମପୁତ୍ର । ପ୍ରାଗ୍‌ଜ୍ୟୋତିଷ—ଆସାମ, କାମାଖ୍ୟାଦେବୀଙ୍କ ମନ୍ଦିର ଏହି ପ୍ରଦେଶରେ ଅବସ୍ଥିତ । ଅଭିଖ୍ୟା—ଶୋଭା ।
(୪) ଗଙ୍ଗାସାଗର ଦ୍ୱୀପ ।

ମୁକତି ଲଭିଲେ ଯହିଁ ସଗରସନ୍ତତି
ଭଗୀରଥତପଫଳେ ଅବନୀପ୍ରବଣା
ତ୍ରିଲୋକପାବନୀ ଗଙ୍ଗା ପାବନ-ପରଶେ;
ବର୍ଗଭୀମା-ଅଧିଷ୍ଠିତ ମହାସ୍ୱର୍ଗୋପମା,
ଇନ୍ଦ୍ରଗୃହ-ଗୃଢ଼ୁ-ପୋତ-ପତାକା-ମାଳଣୀ,
ଗଙ୍ଗାମୁଖେ ପୋତଯାତ୍ରୀ ତାମ୍ରଲିପ୍ତି ପୁରୀ, (୧)
ବିପଣିବୀଥିକା ଯାର ସମୁଜ୍ଜ୍ୱଳ ସଦା
ଦ୍ୱୀପାନ୍ତରାଗତ-ମଣି-ମୌକ୍ତିକ-ପ୍ରବାଳେ;
ପଞ୍ଚାଳେ, କୋଶଳେ ପୁଣି ବିଦେହେ, ମଗଧେ,
ଅଙ୍ଗେ, ବଙ୍ଗେ, ଏହିମତେ ନାନାସ୍ଥାନେ ଭ୍ରମି,
ନାନାତୀର୍ଥ ସେବି, ଶୂରେ ଆସିଣ ମିଳିଲେ
ଉତ୍କଳର ପ୍ରାଚ୍ୟ-ନୀର-ପ୍ରାଚୀର-ଅକୃତି, ( ୨ )
ନୀଳ-ଫେନାକୁଳ-ତୁଙ୍ଗ-ତରଙ୍ଗ-ଭଙ୍ଗୁର,
ନୀଳାଚଳତଟେ ଯହିଁ ଲୋଟେ ବାରିନିଧି, ( ୩ )
ଗମ୍ଭୀର ନିର୍ଘୋଷେ ଘୋଷି ବିଶ୍ୱ ଚରାଚରେ
ଗର୍ଜିଇ କି ନାଗବିଷଜ୍ୱାଳା ଅସମ୍ଭାଳେ
ଫଣୀନ୍ଦ୍ର ବାସୁକି, ଅବା ଫଣାଶ୍ରେଣୀ ତୋଳି !

( ୧ ) ତାମ୍ରଲିପ୍ତିର ଆଧୁନିକ ନାମ ତମଲୁକ । ଏଠାରେ ବର୍ଗଭୀମାଦେବୀଙ୍କ ମନ୍ଦିର ପ୍ରତିଷ୍ଠିତ ।

( ୨ ) ଓଡ଼ିଶାର ପୂର୍ବଦିଗସ୍ଥ ଜଳପ୍ରାଚୀରରୂପୀ ।

( ୩ ) ନୀଳାଚଳ—ଶ୍ରୀକ୍ଷେତ୍ର ।

ଅନନ୍ତ-ନୀଲିମାମୟ ସେ ଜଳକାନ୍ତାରେ ( ୧ )
ଉଲ୍ଲୋଳକଲ୍ଲୋଳଲୀଳା ହେରି କୁତୂହଳେ
ବୀରବୃନ୍ଦ, ସର୍ବେ ହେଲେ ସ୍ତବଧ ବିସ୍ମୟେ !
ସହସା ତରଙ୍ଗ ଭେଦି ଉଠିଲେ ଅଗ୍ରତେ
ଦିବ୍ୟବପୁଷ୍ମନ୍ତ ଜ୍ୱାଳାମାଳାବିଭୂଷିତ
ଭାସ୍ୱର ପୁରୁଷ ଏକ, ସାଗର ଉଭାସି,
ଯା ଦର୍ଶନେ ବେଳାଭୂମିଗୃହମୃଗଯୂଥେ
ସଚକିତେ ମହାତ୍ରସ୍ତେ ପଳାଇଲେ ଦୂରେ ।
ମଧ୍ୟମପାଣ୍ଡବେ ଚାହିଁ ସେ ଦିବ୍ୟପୁରୁଷ ( ୨ )
ବୋଇଲେ "ହେ ବୀର, ଚହ୍ନି ପାରିଲଟି ମୋତେ ?
ଦହିଣ ଖାଣ୍ଡବବନ ବାସବପାଳିତ
ତୋଷି ମୋତେ, ଲଭିଥିଲ ଦେବ-ଦୈତ୍ୟ-ନରେ
ଦୁର୍ଜ୍ଜୟ, ହେ ଜିଷ୍ଣୁ, ଏହି କୋଦଣ୍ଡ ଗାଣ୍ଡୀବ, ( ୩ )
ଏ ଅକ୍ଷୟ ତୂଣଯୁଗ୍ମ, କୀର୍ତ୍ତିରୂପେ ଯାହା
କୀର୍ତ୍ତିଧାରରୂପେ ତୁମ୍ଭେ ଧନୁ ବରଭୁଜେ,
ପାଣ୍ଡବର ଆଶା-ତରୀ ପାରି କଲ ହେଲେ
ଅକୂଳଅତଳ କୁରୁସମରସାଗରେ,

( ୧ ) କାନ୍ତାର—ଅରଣ୍ୟ ।
( ୨ ) ଦିବ୍ୟପୁରୁଷ—ଦେବପୁରୁଷ ।
( ୩ ) ଅଗ୍ନିଦେବ ଖାଣ୍ଡବଦହନ ସମୟରେ ଅର୍ଜ୍ଜୁନଙ୍କୁ ଗାଣ୍ଡୀବଧନୁ ଏବ ଅକ୍ଷୟତୂଣ ଦେଇଥିଲେ ।

ପ୍ରଚେତା-ଅମ୍ବୁଧ୍ୟାଗାରୁଁ ଅଚ୍ୟୁତ-ଆଦେଶେ (୧)
ଆଣି ଦେଇଥିଲି ମୁହିଁ ଏହି ମହାଧନୁ
ତୂଣ ସଙ୍ଗେ—ଯେଉଁ କାର୍ଯ୍ୟେ, ସାଙ୍ଗ ସେ ଭୂତଲେ,
ଏବେ, ମହାବାହୁ, ଆଉ ବହିବ କି ଲାଗି
କରେ ଏହା ? ଉଚିତ ତା ଦେବାର ଫେରାଇ,
ଫିଙ୍ଗିଦିଅ ପାସ୍ତୁବାରେ ତୂଣ ସଙ୍ଗେ ଧନୁ ।"
ଅଗ୍ନିଙ୍କି ନମିଲେ ସର୍ବେ ପୟୋଧି-ପୁଳିନେ,
ଅଗ୍ରଜସଙ୍କେତେ ତହୁଁ ପାର୍ଥ ମହାମତି
ଫିଙ୍ଗିଲେ ସାଗରେ ଧନୁ ବେନତୂଣସହ,
ଆଦରେ ନୀଳାମ୍ବୁସ୍ୱାମୀ, ପ୍ରସାରି ଅମ୍ବରେ
ଉତ୍ତୁଙ୍ଗ-ତରଙ୍ଗ-ବାହୁ, ନେଲେ ତା ତକ୍ଷଣେ,
ବୁଡ଼ିଗଲା ଜଳେ ସେହି ଅଭ୍ରମନ୍ୟୁ ଧନୁ,
ମିଶିଯାଏ ମେଘେ ଯେହ୍ନେ ତ୍ରିବର୍ଣ୍ଣରଞ୍ଜିତ
ଶକ୍ରଚାପ, ତଡ଼ିଲ୍ଲତା-ଶିଞ୍ଜିନୀସଂଯୁତ;
ବିନୟେ ଅନଳଦେବେ ବିନୟଭୂଷଣ
ପୁଚ୍ଛିଲେ ପାଣ୍ଡବପତି କୃତାଞ୍ଜଳିପୁଟେ,
"ହେ ଦେବ, ଏ କେଉଁ ସ୍ଥଳୀ ? କି ଲାଗି ଏଠାରେ
ସନ୍ଧୁଗର୍ଭେ ହୋଇଥିଲା ତୁମ୍ଭ ଆବିର୍ଭାବ ?"
ଉତ୍ତରିଲେ ଅଗ୍ନି "ଏହା ନୀଳାଚଳ ଧାମ,
ସୃଷ୍ଟିଦିନୁ ଅପ୍ରସିଦ୍ଧ ଥିଲା ମହୀତଳେ,

(୧) ପ୍ରଚେତା—ବରୁଣ । ଅଚ୍ୟୁତ—ଶ୍ରୀକୃଷ୍ଣ ।






ମୁ ଥାଏଁ ଗୁପତେ ଯେହ୍ନେ ଭସ୍ମ-ଆବରଣେ;
ପ୍ରଭାସେ ଯେ ଦିନେ ହେଲା ଯଦୁବଂଶ କ୍ଷୟ,
ଚତୁର୍ଭୁଜରୂପ ପ୍ରଭୁ ଧଇଲେ ସେ କାଳେ
ଯୋଗବଳେ ଯୋଗେଶ୍ୱର, ସାଙ୍ଗ ଦେଖି ଭବେ
ଭୂଭାରହରଣବ୍ରତ, ହେଲେ ପୁଲକିତ,
ଏକ ମାତ୍ର ନିଜକୁଳେ ପ୍ରଦ୍ୟୁମ୍ନେ କରେଣି
ଜୀବିତ, ଭକତବାକ୍ୟ ଫଳାଇବା ଲାଗି,
ପେଷିଲେ ଅଯୂଥ ତାର କଥନ ମନାଦି,
ସଂହାର ଶମ୍ବରରିପୁ , ନ'ବାହୁଡି ଆଉ (୧)
ଶ୍ରୀକରେ ତାଙ୍କର ଚକ୍ର, ଅମ୍ବର ଉଭାପି,
ଦିଗପାଳେ, ବ୍ୟୋମଚରେ ହୋଇ ନମସ୍କୃତ,
ମହାବେଗେ ଅସିଲା ସେ ରତ୍ନାକରକୂଳୁଁ
ପୂର୍ବମୁଖେ, ହୀନପ୍ରଭ କରି ଦିନନାଥେ,
( ହୀନାଂଶୁ ତାଙ୍କରି ତେଜେ ସୁଧାଂଶୁ ଯେସନ )
ଏହିଭଳି ଦୃଶ୍ୟ ବଡ଼େ ଦେଖିଥିଲେ ଥରେ
ତ୍ରେତାଯୁଗେ ବିଶ୍ୱବାସୀ, ବସୁମତୀସୁତା
ସୁନ୍ଦରୀସୀମନ୍ତମଣି, ସତୀଶିରୋମଣି
( ପୂତ ହେଲ ମୁହିଁ ଯାଙ୍କ ଶ୍ରୀଅଙ୍ଗ ପରଶେ (୨)
ଲଙ୍କାପୁରେ ) ସୀତା ସଙ୍ଗେ ଯେବେ ରଘୁବୀର

(୧) ଶମ୍ବରରିପୁ—କାମଦେବ ।
(୨) ଲଙ୍କାରେ ସୀତା ଦେବୀଙ୍କର ଅଗ୍ନିପରୀକ୍ଷା ଏହି ଉକ୍ତିର ଲକ୍ଷ୍ୟ ।




ଅଯୋଧ୍ୟାକୁ ବଳେ ହେଲେ ଉତ୍କଳପୁଷ୍ପକେ
ନୀଳାମ୍ବରେ, ବିପ୍ଳବୀୟ ପ୍ଳାବ ପ୍ରଶ୍ରୟରେ ; (୧)
ବସନ୍ତେ ଚେତନହାର ଚକ୍ର-ଅଲୋକେ ସେକାଳେ
ଅଲୋକିତ ହେଲା କ୍ଷଣେ ସୃଷ୍ଟିସୀମା-ପାରେ
ଆଦିମ-ତମସଗର୍ଭ, ଚେତନାରୂପୀ ଯେତେ (୨)
ରବି, ଶଶୀ, ଗ୍ରହ, ତାରା, ମୂହିଁ ଆଦି କରି
ଅନ୍ଧ ହୋଇଗଲେ ସର୍ବେ ସେହି ତେଜପୂରେ ;
ସ୍ଫୁଲିଙ୍ଗ ତାଙ୍କର ଚିନା ମୂହିଁ, ରାଜର୍ଷି,
ପ୍ରସରଣ ଥିଲା ଆଗେ ଅଶରୀର-ବାଣୀ
ଦେବଲୋକେ, କୃଷ୍ଣଙ୍କରୁ ଆସି ଚକ୍ରବର
ପଡ଼ିବ ଯେଉଁଠାରେ, ତହିଁ ହେବ କଳିଯୁଗେ
ଭବତ୍ରାହି-କେଶବର ଭବି-ଅବତାର,
ପତିତପାବନବାନା ଉଡ଼ିବ ଭୂତଳେ;
ଅବତର ଏହିଠାରେ ତେଜକୁଳପତି
ସୁଦର୍ଶନ ବନ୍ଧଦ୍ରୋହି-ଦନୁଜ-ଧର୍ଷଣ,
ସିନ୍ଧୁଗର୍ଭେ ପ୍ରବେଶିଲେ ସଙ୍କୋଚ ସ୍ୱ ବପୁ,
ତଥାପି ଉତ୍କଳ ହୋଇ ବାଉ ଅସମ୍ଭାଳେ
ପ୍ଳାବନ୍ତ ଭୂଖଣ୍ଡ, ଖଣ୍ଡପ୍ରଳୟ ଆକାରେ,
ଯୋଉଜାବେ ଚକ୍ରତରେ ଉପୁଜାଇ ତ୍ରାସ,

( ୧ ) ପ୍ରଭର ପ୍ଳାବନରେ ତକବାଳ ପ୍ଳାବତ କର ।
( ୨ ) ଆଦମ ତମସଗର୍ଭ—ଆଦମ ଅନ୍ଧକାରର ଗହ୍ୱର ।

ମହାପ୍ରୟାଣେ ଯାତ୍ରୀ ତନ୍ତୁଁ ଊର୍ମି ପାଶଯୋଗେ
ଫେସ୍ତାଇଲେ ନିଜସ୍ୱଚ୍ଛେ, ରହିଗଲା ଯାତ୍ରା,
ହ୍ରଦାକାରେ ପରିଣତ ବେନିଦିଗେ ଏବେ
ନିମ୍ନଭୂମେ, ସର, ପୁଣି ଚିଲିକା ଆଖ୍ୟାତ, (୧)
ସେ ଦିନୁ, ହେ ପୁଣ୍ୟଶ୍ଳୋକ, ଲୋକେ ଏହି ସ୍ଥଳୀ
ସିନ୍ଧୁତୀରେ ବୋଲୁଅଛନ୍ତି ଚକ୍ରତୀର୍ଥ ନାମେ, (୨)
ହତଚେତନ ହର-ହେତି ରହିବେ ସମ୍ପ୍ରତି (୩)
ଯାହିପାଶେ, ଅବତୀର୍ଣ୍ଣ ହେଲେ ବିଶ୍ୱମ୍ଭର,
ପୂର୍ବବର୍ଣ୍ଣମତେ ଯାଇ ଖଟିବେ ଶ୍ରୀପଦେ,
ଅଛିଥିଲି ଖଟଣିରେ ଶ୍ରୀଚକ୍ର ସ୍ୱରୂପରେ
ଅଛି ମୁହିଁ, ତେଣୁ ହେଲା ତୁମ୍ଭ ସଙ୍ଗେ ଭେଟ,
ଭାଗ୍ୟଫଳେ ତୁମ୍ଭେ ଆସି ମିଳିଲ ଏଠାବେ,
ପୁଣ୍ୟତମ ଏ ସୈକତ ବଙ୍ଗ-ତଟରେ, (୪)
ବାଛି ନେଇଛନ୍ତି ଯାହା ନିଜେ ଲୀଳାମୟ
ପୁଣି ମର୍ତ୍ତ୍ୟଲୀଳାଲାଗି, ଅଖିଳ ଭାରତେ;
ପକ୍ଷିଦଳେ ଶ୍ରେଷ୍ଠ ଯେହ୍ନେ ପ୍ରଦ୍ୟୁମ୍ନ ଲକ୍ଷିତ,
ଶ୍ରେଷ୍ଠ ଏ ଉତ୍କଳଭୂମି ଗୁଣେ ଗରୀୟସୀ,

(୧) ପୁରୀର ଏକ ପାର୍ଶ୍ୱରେ ଚିଲିକା, ଅନ୍ୟ ପାର୍ଶ୍ୱରେ ସର ହ୍ରଦ ଅବସ୍ଥିତ ।
(୨) ଚକ୍ରତୀର୍ଥ—ପୁରୀସ୍ଥିତ ସ୍ୱର୍ଗଦ୍ୱାରର ଅଦୂରବର୍ତ୍ତୀ ।
(୩) ହରହେତି—ବିଷ୍ଣୁଙ୍କର ଅସ୍ତ୍ର ।
(୪) ସୈକତ—ଶ୍ରୀକ୍ଷେତ୍ର ସିକତାମୟ ।

ଯାମ୍ୟେ ଯାର ଋଷିକୁଲ୍ୟା, କପିଶା ଉତ୍ତରେ, (୧)
ପଶ୍ଚିମେ ଭାର୍ଗବାଶ୍ରମ ମହେନ୍ଦ୍ରଶିଖରୀ (୨)
ଚରକୋଳାହଳମୟ ପୂର୍ବେ ପୟୋନିଧି,
ପୁଷ୍ପକୁଞ୍ଜେ ଶ୍ରେଷ୍ଠ ତାର କେଶର ଯେସନେ,
ଶ୍ରେଷ୍ଠ ଏ ନୀଳାଦ୍ରି ଧାମ ସମଗ୍ର-ଉତ୍କଳେ, (୩)
ନିବସନ୍ତ ନାନାସ୍ଥାନେ ଦେବ ଦେବୀ ଯେତେ,
ଭାରତ, ଭରତଖଣ୍ଡେ, ଆସି ଏ ପ୍ରଦେଶେ
ବିହରିବେ ଠାବେ ଠାବେ ନିଜ ରୁଚିମତେ,
ଠୁଳ ହେବେ ଅବଶେଷେ ପୁଣି ଏ ପୁଳିନେ,
ଅଖିଳ ଭାରତ-ତୀର୍ଥ-ଭ୍ରମଣ-ସୁକୃତ
ଲଭିବେ ନିମିଷେ ଲୋକେ ଏହି ସ୍ଥଳେ ଭ୍ରମି;
ମାନବଙ୍କ କଳୁଷ-ମଳ ନିବ ଅପହରି,
ମୋ ଯୋଗେ ସ୍ୱର୍ଣ୍ଣିର ଯଥା, ଏ ତୀର୍ଥସେବନେ;
ଫୁରିବ ଅମଳଜ୍ଞାନ, ଲଭି ପୂର୍ଣ୍ଣାହୁତି;
ହୋମକୁଣ୍ଡେ ଜଳି ଉଠେ ଯଥା ମୋର ଶିଖା;
ଶଂଖ, ଚକ୍ର, ଗଦା, ପଦ୍ମ, ହୋଇ ପ୍ରତିଷ୍ଠିତ

(୧) ଯାମ୍ୟ—ଦକ୍ଷିଣଦିଗ । କପିଶା—ସୁବର୍ଣ୍ଣରେଖା ।

(୨) ଉତ୍କଳର ପଶ୍ଚିମାଂଶସ୍ଥିତ ପର୍ବତମାଳାର ସାଧାରଣ ନାମ ମହେନ୍ଦ୍ର । ମଞ୍ଜୁଷା ଗଡ଼ ନିକଟରେ ଏହି ପର୍ବତମାଳାର ସର୍ବୋଚ୍ଚ ଶୃଙ୍ଗ ଅଦ୍ୟାପି ମହେନ୍ଦ୍ର ନାମରେ ଅଭିହିତ । ମହେନ୍ଦ୍ର ପର୍ବତରେ ଯାମଦଗ୍ନ୍ୟଙ୍କର ଆଶ୍ରମ ଥିଲା ।

(୩) ନୀଳାଦ୍ରି ଧାମ—ଶ୍ରୀକ୍ଷେତ୍ର ।

ସ୍ଥିର ସ୍ଥଳେ, ବିରାଜିବ ସ୍ଥିର କ୍ଷେତ୍ରବର (୧)
ଏ ଉତ୍କଳକଳେବରେ ଏବେ ଦେବାଦେଶେ ;
ଅଛିଲେଣି ସୁଦର୍ଶନ; ଶଙ୍ଖ, ପଦ୍ମ, ଗଦା
ରଖିଛନ୍ତି ରତ୍ନାକର ମହାଦରେ ଯାହା, (୨)
ଦେବାଦେଶମତେ ମୁହିଁ ତାଙ୍କ ପାଶେ ଯାଇ,
ଆଣି, ହେ ପାଣ୍ଡବଗଣ, ଜହ୍ନବ ଉତ୍କଳେ;
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ, ମହାବାହୁ,
ଦେଖିବ ଅଶେଷ ତୀର୍ଥ ଗିରି ନଦ ନଦୀ;
ଦେବଙ୍କ ବଚନେ ସର୍ବେ ପ୍ରସନ୍ନମାନସେ
ଅବଗାହି ସିନ୍ଧୁଜଳେ, ଉଦ୍ଦେଶେ ନମିଲେ
ଭବ-ମର୍ତ୍ତ୍ୟବଇକୁଣ୍ଠସାଇଁ-ପଦ୍ମପାଦେ, (୩)
ଅହୋରାତ୍ର ରହି ତହିଁ, ଭ୍ରମିଲେ ଯେକାଳେ
ଉଷାର ସୀମନ୍ତମଣି ପ୍ରଭାତୀ ତାରକା
ପ୍ରାଚୀମୂଳେ ଉର୍ମିଶିରେ (ଝଟିଦିଏ ଯେବେ

---

(୧) ପୁରୀ ଶଙ୍ଖକ୍ଷେତ୍ର, କୋଣାର୍କ ପଦ୍ମକ୍ଷେତ୍ର, ଭୁବନେଶ୍ୱର ଚକ୍ରକ୍ଷେତ୍ର, ଯାଜପୁର ଗଦାକ୍ଷେତ୍ର ।

(୨) ରତ୍ନାକର—ଆରବ୍ୟସାଗର ।

(୪) ମର୍ତ୍ତ୍ୟବୈକୁଣ୍ଠ—ଶ୍ରୀକ୍ଷେତ୍ର ।

କଚ୍ଛପଲ ମହିଷାଳ ହିନ୍ଦୁଗିରବାସୀ,
ଚରବାକୁ ବର୍ଣ୍ଣଶୂନ୍ୟ ବେଣାପୂର୍ଣ୍ଣ ପାଟେ
ପୁଣ୍ୟନାଶ ଭାର୍ଗବୀର) ନୀଳାଚଳ ତେଜି (୧)
ଚଳିଲେ ମହେନ୍ଦ୍ରମୁଖେ ଅନଳ ସହିତେ ।

---

(୧) ଭାର୍ଗବୀ—ଶ୍ରୀକ୍ଷେତ୍ରର ଅଦୂରବାହିନୀ ନଦୀ । ପୂର୍ବକାଳରେ ଏହାର ତୀର ଦିଗନ୍ତବ୍ୟାପୀ ବେଣାପାଟରେ ପରିପୂର୍ଣ୍ଣ ଥିଲା ।



## ତୃତୀୟ ସର୍ଗ ।

ହେମଗୌରବପୁ ଯୁବାବିପ୍ରବେଶଧାରୀ
ଅଗ୍ନି ସଙ୍ଗେ, ଦକ୍ଷଭାଇ ବାୟୁକୋଣେ ଯାଇ,
ମହେନ୍ଦ୍ର-କାନ୍ତାର ପଥେ, ମିଳିଲେ ବହ୍ନ (୧)
କଲ୍ଲୋଳିନୀକୁଳେଶ୍ୱରୀ ମହାନଦୀକୂଳେ;
ଗଗନପରଶୀ ବେନିଦିଗେ ତୁଙ୍ଗଭୃଗୁ—
ସଙ୍କଟେ ସଙ୍କୋଚି ବପୁ, ବାହାରଇ ଯହିଁ
ପୁଣି ମୂର୍ତ୍ତାକାରେ ସ୍ରୋତ ପୂର୍ବଦିଗ୍‌ଗାମୀ, (୨)
ବିଜନ ଭୀଷଣ ସ୍ଥଳୀ, ବନଗଜବ୍ରଜ—
କଣ୍ଡୂଳକପୋଳପିଣ୍ଡଘର୍ଷଣେ କମ୍ପିତ—
ଦ୍ରୁମାବଳୀଦେନ୍ତି ଯହିଁ ଝରଇ ପ୍ରବାହେ
ସୁରଭି ଅରଣ୍ୟପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ,
ବନଦେବୀଙ୍କର କି ସେ ଅର୍ଘ୍ୟ-ଲାଜାଞ୍ଜଳି ? (୩)

---

(୧) ମହେନ୍ଦ୍ରକାନ୍ତାର—ଓଡ଼ିଶା ଗଡ଼ଜାତର ମହାରଣ୍ୟ ।

(୨) ସାତକୋଟିଆ ଗଣ୍ଡର ପୂର୍ବସୀମା ବଡ଼ମୂଳ ଘାଟି, ଦଶପଲ୍ଲା ରାଜ୍ୟର ଅନ୍ତର୍ଗତ । ସାତକୋଟିଆ ଗଣ୍ଡ ଅଂଶତଃ ଦଶପଲ୍ଲାରେ ଏବଂ ଅଂଶତଃ ବୌଦରେ ଅବସ୍ଥିତ । ଏପରି "ଭୀମକାନ୍ତ" ଦୃଶ୍ୟ ଉତ୍କଳରେ ବିରଳ । ଏଠାରେ 'ମହାନଦୀର ଶଯ୍ୟା ଉଭୟପାର୍ଶ୍ୱସ୍ଥିତ ପର୍ବତମାଳାଦ୍ୱାରା ଅତ୍ୟନ୍ତ ସଙ୍କୁଚିତ ।

(୩) ଲାଜାଞ୍ଜଳି—ଖଇର ଅଞ୍ଜଳି ।






ଦନ ଥାଉଁ ଥାଉଁ ତହିଁ ମହାଶୈଳଛାୟା
ବ୍ୟାପି ଜଳେ, ସ୍ଥଳେ, ନଦୀପୁଲିନେ, କାନନେ,
ଉପୁଜାଏ ମନେ ସନ୍ଧ୍ୟା-ଅଗମର ଭ୍ରମ,
ଭୁଲେ ଯେ ଭ୍ରମ ଦେଖି ଦୂରେ ପୃଷ୍ଠଭାଗେ
(ଅସୁଖିର, ଆହା, ପୂର୍ବସୁଖସ୍ମୃତି ପର ! )
ଅସ୍ତାତପେ ଉଦ୍ଭାସିତ ତୁଙ୍ଗ ଶୃଙ୍ଗାବଳୀ; (୧)
ପର୍ଣ୍ଣ-ଶେଯେ ତହିଁ ନିଶି ଯାପି ବଟମୂଳେ
(ଯେ ନାମେ ଅଦ୍ୟାପି ସ୍ଥଳୀ ବୋଲାଏ ଜଗତେ)। (୨)
ପଶିଲେ ଯାତ୍ରିଏ ଯେହ୍ନେ ବକଟ ସଙ୍କଟେ
ଛାୟାମୟ, ଅନୁକ୍ଷଣ ପୂର୍ଣ୍ଣ ଝିଲ୍ଲିରବେ,
କୁହେଳୀରେ ନୀଳବର୍ଣ୍ଣ ଉତ୍ତୁଙ୍ଗ ଗିରି (୩)
ଧାଡ଼ି ହୋଇ ବେଷ୍ଟନରେ, ଏକ ପରେ ଏକ
ଶିଖା ଟେକି କଳନ୍ତି କି ଗଗନର ସୀମା ?
ଦଗ୍‌ବାରଣଶୁଣ୍ଡାକାରେ କାହିଁ ଅବା ନୀରେ
ମିଶିଛି ତଥ୍ୟକେ ଅସି ଶ୍ୟାମ ଶୈଳନାସି, (୪)

(୧) ପଥିକର ପୃଷ୍ଠଭାଗରେ ଦୂରସ୍ଥିତ ଅସ୍ତକବେଳ୍ୟ ଲଶୃଙ୍ଗଦର୍ଶନର ସହିତ ଅସୁଖୀ ବ୍ୟକ୍ତିର ପୂର୍ବସୁଖସ୍ମୃତିର ଉପମା ।
(୨) ବଡ଼ମୂଳ ଘାଟି ସାତକୋଶିଆ ଗଣ୍ଡର ତୋରଣସ୍ୱରୂପ । ଏହିଠାରୁ ମହାନଦୀ ପ୍ରନଦୀର ଦୂର୍ବ ପ୍ରଶସ୍ତତା ଲଭିଅଛି ।
(୩) ଉତ୍ତୁଙ୍ଗ—ଅତ୍ୟୁଚ୍ଚ ।
(୪) ପର୍ବତର ନାସିକାକୃତି କୋଣ । ପର୍ବତନାସି ଦୂରରୁ ଦେଖି ହସ୍ତିଶୁଣ୍ଡ ପରି ଦିଶେ ।




ଗୁଲ୍ମାଦିକେ ଶବଳିତ ହୋଇ ଠାବେ ଠାବେ;
କାହିଁ କଳକଳ ରବେ ଗିରି-ନିର୍ଝରିଣୀ
(ସୃଷ୍ଟିକାଳୁଁ ପଶି ନାହିଁ ସୌରକର ଯହିଁ )
ସୁଚିକ୍କଣ କୃଷ୍ଣଶିଳାସୋପାନଶ୍ରେଣୀରେ
ତମୋମୟକନ୍ଦରରୁ ଆସଇ ଓହ୍ଲାଇ
ଅପ୍ରଗଲ୍‌ଭେ, ଅପ୍ରଗଲ୍‌ଭେ ଦୀନ ସାଧୁ ଯଥା
ସାଧେ ପରହିତ ହୋଇ ବୀତସ୍ପୃହ ଯଶେ;
ନିବିଡ଼-କୀଚକକୁଞ୍ଜେ ଭିନ୍ନାଞ୍ଜନପ୍ରଭ—
ତିମିରେ ଆଚ୍ଛନ୍ନ ମହାଘୋର ଶୈଳଖୋଲେ (୧)
ଲୁଚି ଏକାକିନୀ କାହିଁ ଝୁରଇ କରୁଣେ
କୁରରୀ, କି ଦୁଃଖେ ତାହା ଜାଣେ ସେ ଦୁଃଖିନୀ;
ଶୃଙ୍ଗଯାଏ ଶୈଳତଟେ ପଦେ ପଦେ ଉଭା
ବନଦେବୀସୌଧାକୃତି ବନସ୍ପତିଶାଖେ
ପୂରି ସ୍ନେହ ବିଜନ ବୀଣାଜିଣା କଣ୍ଠରବେ
ଝୁରୁଛନ୍ତି ଅଷ୍ଟକାଳେ କଷ୍ଟିପେଡ଼ା, ଶୁଆ, (୨)
ନଦୀକୂଳବନ୍ଧୁ, ଶ୍ୟାମା, ସାରି, ଚଷାପୁଅ । (୩)
ଯାଉଁ ଯାଉଁ ସେହି ରମ୍ୟ ଭୀଷଣ ସଙ୍କଟେ
ସ୍ୱପ୍ନେ ଉତ୍‌ଫୁଲ୍ଲନେତ୍ର ପାଣ୍ଡୁପୁତ୍ରେ ଦେଖି,

---

(୧) ଭିନ୍ନାଞ୍ଜନପ୍ରଭ ତିମିର—ଦଳିତକଜ୍ଜ୍ୱଳ ପରି କୃଷ୍ଣବର୍ଣ୍ଣ ଅନ୍ଧକାର ।
(୨) କଷ୍ଟିପେଡ଼ା—ମଧୁରନିନାଦୀ ବନପକ୍ଷିବିଶେଷ । ବଙ୍ଗୀୟ ନାମ "ବଉ-କଥାକଓ" ।
(୩) ନଦୀକୂଳବନ୍ଧୁ—ପକ୍ଷିବିଶେଷ । ଚଷାପୁଅ—ପକ୍ଷିବିଶେଷ ।

ଦେବ ବୈଶ୍ୱାନର ତହୁଁ କହିଲେ ସପ୍ରୀତେ,
"ହେ ସୁଜନ, ଦେଖ ଏଥି ବହନ୍ତି କେସନେ
ମହାନଦୀ ନାମେ ପୂର୍ବସାଗରଗାମିନୀ,
ହରମୌଳିମାଲା ଦେବୀ ତ୍ରିସ୍ରୋତା ଜାହ୍ନବୀ,
ସୁକାନ୍ତ-ମହର୍ଷି-ତପେ ପତିତପାବନୀ (୧)
ତୁଷ୍ଟ ହୋଇ, ଏହି ମୁଖେ ଆସିଲେ ଯେ କାଳେ,
ଅର୍ଦ୍ଧପଥେ ତାଙ୍କ ଗତି ରୋଧିଲେ ଏଠାବେ
ନୀରନ୍ଧ୍ର-ପ୍ରାଚୀରାକୃତି ଏହି ମହାଗିରି,
ତହୁଁ କୁଳଶୀଙ୍କି ଋଷି ତୋଷି ତପୋବଳେ
ଏ ବର୍ତ୍ମ ଛେଦିବାଲାଗି କଲେ ଅନୁରୋଧ,
ବଜ୍ରକରେ ଅବତରି ଏହି ଶୈଳଚୂଳେ,
ଛେଦି ଏ ଶଇଳ, ବଜ୍ରୀ ରଚିଲେ କୌଶଳେ
ଉତ୍କଳର ମୁକ୍ତିଦ୍ୱାରରୂପୀ ଏ ତୋରଣ
ସପ୍ତକୋଶବ୍ୟାପି, ଶୈଳକୁଞ୍ଜେ ଅନାବୃତ,
ଛିନ୍ନ ଶିଳାପୁଞ୍ଜ ଯାର ବିଷମି ଏ କାଳେ
ନଦୀ-ଶଯ୍ୟା, ଉପ୍ଲୁକ୍ରାନ୍ତ ଅସଂଖ୍ୟ ପ୍ରପାତ (୨)
ଠାବେ ଠାବେ, କଳରବେ ପୂରାଇ ଅଟବୀ;

(୧) ସୁକାନ୍ତ—ସୁକାନ୍ତ ଋଷିଙ୍କ ତପଃପ୍ରଭାବରେ ଗଙ୍ଗା ମହାନଦୀରୂପରେ ମଧ୍ୟଭାରତବର୍ଷରୁ ଉତ୍କଳକୁ ଆସିଥିବାର କିମ୍ବଦନ୍ତୀ ଅଛି ।

(୨) ସାତକୋଟିଆର ପଶ୍ଚିମ ଦିଗରେ ମହାନଦୀର ଶଯ୍ୟା ବିଷମପୂର୍ଣ୍ଣ । ପ୍ରସ୍ତରମୟ ହେବାରୁ ସ୍ରୋତରେ ନୌଚାଳନ ନିତାନ୍ତ ବିପଦସଙ୍କୁଳ ।

ମହେନ୍ଦ୍ରର ଅଧିଷ୍ଠାନ ବିନୁ ଏ ଶିଖରୀ
ବୋଲାଏ ମହେନ୍ଦ୍ର ନାମେ କୁଳାଚଳକୁଳେ, (୧)
ପରମପବିତ୍ର ଗିରି, ଯେବନ୍ତ ଆଦରେ
ଦେବ, ଋଷି, ସିଦ୍ଧେ ଯାର ଶୃଙ୍ଗ ଅଗଣିତ—
ମେଘାସନ ମେଘାସନ ମଘବାବାଞ୍ଛିତ (୨)
ସୁଗିରୁ ଉପଳାନ୍ତସେବ୍ୟ କରନ୍ତେ ଭାସ୍ୱର,
କରନ୍ତେ ମୁଖର କେକିକଳକେକାରବେ;
ପୂତ-ବୈତରଣୀସ୍ରୋତପ୍ରଭବ ଗୋନାସା, (୩)
ଋଷିପଦ୍ମମଧ୍ୟେ ଯହିଁ ଭାର୍ଗବମୁଖରୁ

(୧) ମହେନ୍ଦ୍ର—ସପ୍ତକୁଳାଚଳର ଅନ୍ୟତର ।

(୨) ମେଘାସନ ଶୃଙ୍ଗ ମୟୂରଭଞ୍ଜରେ ଅବସ୍ଥିତ । ସ୍ୱଚ୍ଛନୀର ପାଳନ୍ଦୀ ଏହି ପର୍ବତରୁ ନିଃସୃତ ।

(୩) ଗୋନାସା—କେନ୍ଦୁଝରରେ ଅବସ୍ଥିତ । ବୈତରଣୀର ପ୍ରଭବସ୍ଥାନ । ଏହିଠାରେ ପର୍ବତଦେହରେ ଦେବନାଗରାକ୍ଷରରେ "ଆଦ୍ୟବୈତରଣୀ" ଏହି ଶବ୍ଦ ଅଙ୍କିତ ଅଛି । ଏହି ପର୍ବତର ପାଦଦେଶରେ "ଋଷିପଦ୍ମ" ନାମକ ପ୍ରସ୍ତରମୟୀ ସ୍ଥଳୀ ବୈତରଣୀର ସ୍ରୋତଦ୍ୱାରା ଧୌତ ହେଉଅଛି । ଏହି ନିବଡ଼ ପର୍ବତାକୀର୍ଣ୍ଣ ସ୍ଥଳୀରେ ଭଗବାନ୍ ଗୋନାସିକେଶ୍ୱରଙ୍କର ଦେଉଳ ଅବସ୍ଥିତ । ଦେଉଳର ପାଦବାହିନୀ ବୈତରଣୀକୂଳରେ ଯୋଡ଼ାଏ ବୃହତ୍ ଚମ୍ପକବୃକ୍ଷ ଅଛି । ସେ ଭଳି ଚମ୍ପକବୃକ୍ଷ ଓଡ଼ିଶାର ଅନ୍ୟତ୍ର ଦୁର୍ଲ୍ଲଭ । ଭଗବାନ୍ ଭାର୍ଗବଙ୍କ ଏହିଠାରେ ଆଶ୍ରମ ଥିବାର କିମ୍ବଦନ୍ତୀ ଶୁଣାଯାଏ ।

ଝରେ ପୂତତର ପୁଣ୍ୟଶ୍ଳୋକକଥାମୃତ;
ଗିରି ମାଲ୍ୟବନ୍ତ ଗିରିମାଳେ ମଧ୍ୟମଣି, (୧)
ସ୍କନ୍ଧେ ଶୁଭ୍ର-ଝରଣାର-ଉତ୍ତରୀୟ ଧାରୀ;
ମୈନାକ ପିନାକପାଣିପ୍ରିୟା-ପ୍ରିୟସ୍ଥଳୀ; (୨)
ଝର-ଉପବୀତଧର, କପର୍ଦ୍ଦିସେବିତ
କପିଳାସ ଅଭ୍ରଗର୍ଭ ଅଭ୍ରଂକଷ ଗିରି, (୩)
ପଞ୍ଚଧାର ଜଳଦର କେଳିମଞ୍ଚରୂପୀ, (୪)
କେତକକୁଞ୍ଜେ ଯାର ଝରଇ ଅଦୂରେ
ତପ୍ତ ପୂତ ପ୍ରସ୍ରବଣ ରୁଦ୍ର-ଅଧିଷ୍ଠାନେ;
ଏ ଅଦ୍ରି ବିଶାଳ ଶୃଙ୍ଗକୁଳେ ବିଭ୍ରାଜିତ

---

(୧) ମାଲ୍ୟବନ୍ତ—ଲଙ୍କତାର ମାଲ୍ୟଗିରି । ଏହାର ବିଶାଳ ନୀଳଦେହରେ ଶୁଭ୍ର ନିର୍ଝରଣ ଦୂରରୁ ଅତି ମନୋହର ଦିଶେ । ଏ ମାଲ୍ୟବନ୍ତ ରାମାୟଣର ମାଲ୍ୟବନ୍ତ ନୁହେ । ଆଧୁନିକ ରାଜନୈତିକ ଓଡ଼ିଶା ମଧ୍ୟରେ ମାଲ୍ୟଗିରି ସବୁଠାରୁ ଉଚ୍ଚ ।

(୨) ମୈନାକ—ରଣପୁର ଅନ୍ତର୍ଗତ ଦୁର୍ଗାଦେବୀ ଅଧିଷ୍ଠିତ ପର୍ବତ । ରଣପୁରର ରାଜଧାନୀ ଏହି ପର୍ବତର ପାଦଦେଶରେ ଅବସ୍ଥିତ ।

(୩) କପିଳାସ—ଢେଙ୍କାନାଳର ଅନ୍ତର୍ଗତ । ଝରଣା ଏବଂ ଅଭ୍ର ସକାଶ ଏହା ପ୍ରସିଦ୍ଧ । ଓଡ଼ିଶାର ଏହା ଗୋଟିଏ ପ୍ରସିଦ୍ଧ ଶିବକ୍ଷେତ୍ର ।

(୪) ପଞ୍ଚଧାର—ଆଠମଲ୍ଲିକରାଜ୍ୟର ଅନ୍ତର୍ଗତ । ଏହାର ଅଦୂରରେ "ଦେଉଳଝର"ନାମକ ସୁପ୍ରସିଦ୍ଧ ତପ୍ତପ୍ରସ୍ରବଣ ଅବସ୍ଥିତ । ଗଡ଼ଜାତ ମଧ୍ୟରେ ଏହା ଗୋଟିଏ ଶିବକ୍ଷେତ୍ରରୂପେ ପ୍ରତିଷ୍ଠିତ । ଆଠମଲ୍ଲିକାଧୀଶ୍ୱର ମହାରାଜ ଶ୍ରୀ ମହେନ୍ଦ୍ର ଦେଓଙ୍କର ପୂର୍ବପୁରୁଷମାନେ ଏଠାରେ ଅନେକ କୀର୍ତ୍ତି ସ୍ଥାପନ କରିଥିଲେ ।

ଉତ୍କଳ-କଳଙ୍ଗବପୁ ମଣ୍ଡିଛି ଶିଖରୀ,
ମଧ୍ୟେ ଦ୍ୱିଖଣ୍ଡିତ ହୋଇ ଏହି ଦେବଖାତେ ।
ଅଗ୍ନିଙ୍କ ବଚନେ ସର୍ବେ ସେହି ପୂତନୀରେ
ଅବଗାହି ଭକ୍ତିଭାବେ, ଦେଲେ ଜଳାଞ୍ଜଳି
ପିତୃଲୋକେ, ସେ ବୈକୁଣ୍ଠସଙ୍କଠୁ ବାହାରି
ଚଳିଲେ ଗନ୍ତବ୍ୟପଥେ ପଶ୍ଚିମାଶାମୁଖେ,
ଦେଖିଲେ କୌତୁକେ ପାନ୍ଥେ ସେ କାନ୍ତାରପଥେ,
ଅନନ୍ତ-ବୈଚିତ୍ର୍ୟମୟୀ ଅରଣ୍ୟ-ପ୍ରକୃତି,
କିଅବା ସେ ମାର୍ଗରେଖା ଗୈରିକେ ଅରୁଣ
ସୀମନ୍ତେ ସିନ୍ଦୂରରେଖା ବନଲକ୍ଷ୍ମୀଙ୍କର ?
କାହିଁ ଊର୍ଦ୍ଧ୍ୱେ ଉଠି ମାର୍ଗ ମିଶିଛି ଆକାଶେ
( ଯହୁଁ ଚକ୍ରାକାରେ ଦିଶେ ବନାବୃତ ଧରା
ଚୌଦିଗେ, ବାରିଧି ପ୍ରାନ୍ତେ ଦିଗନ୍ତ-ବିସ୍ତାରୀ,)
କାହିଁ ଅବା ତଳେ ଯାଇ ମିଶିଛି ପାତାଳେ;
ଏହିରୂପେ ଯାଉଁ ଯାଉଁ ନାନା ଦୃଶ୍ୟରାଜି
ପାନ୍ଥଙ୍କର ପଥେ ହେଲା ନୟନ-ଅତିଥି,
ନୀଳବନସ୍ଥଳୀ ମଧ୍ୟେ ଦୂରପ୍ରସାରିତ
ସୌରକରେ ଭାସି ଶୁଭ୍ର ନଦୀବାଲିରେଖା;
ସ୍ନିଗ୍ଧଛାୟା-ଦ୍ରୁମବତୀ ଭୀମ ମହାଟବୀ,
ଅବରୁଦ୍ଧ ମହୀନଭଃ ପଲ୍ଲବଗହନେ,
ଶୁଭେ ନାହିଁ କେବେ ଯାର ଜୀସ୍ତବ୍ଧ ଗରଜେ

ସୃଷ୍ଟିହିନୁ କାଷ୍ଠଜୀବିକୁଠାରଶବଦ;
କାହିଁ ମୁଖରତ ସ୍ଥଳୀ ଶ୍ୱାପଦନିର୍ଘୋଷେ,
ପ୍ରତିଘୋଷେ ପ୍ରତିବାଣୀ ଦିଅଇ ଯା ଶୁଣି
ପ୍ରତିଧ୍ୱନି ଗିରିଗୁମ୍ଫାକ୍ରୋଡ଼ପ୍ରଣୟିଣୀ;
ଶିଳାଶଯ୍ୟାପ୍ରବାହିନୀ ଶୈଳସ୍ରୋତସ୍ୱତୀ,
ଉପଲେ ସ୍ଖଳିତ ହୋଇ ଯାର ବାରିଧାର
ମିଶାଏ ଝର୍ଝରରବ ଘୋର ଝିଲ୍ଲିରବେ;
ପ୍ରପାତ, ମଣ୍ଡିତ ଇନ୍ଦ୍ରକୋଦଣ୍ଡ-କିରୀଟେ,
ବାଟେ ଫରଫର ଦୂର୍ବାଙ୍କୁରର ପାକୁଡା—
ପତ୍ରେ ଯା ଶୋଭେ ପଣ୍ଡିଶ୍ୟାମଶୈଳଦେହେ,
ଭଗୁରୁ ଭଗୁକୁ ଡେଇଁ ଗମ୍ଭୀରଗର୍ଜ୍ଜନେ;
ଗିରି-ଦରପଣରୂପୀ ଗିରିପାଦଦେଶେ
ସ୍ୱଚ୍ଛହ୍ରଦ, ଅଳଂକୃତ ଫୁଲ୍ଲ-କୋକନଦେ,
ସ୍ନିଗ୍ଧଗନ୍ଧ ସୌଗନ୍ଧିକେ, କୁମୁଦେ, କହ୍ଲାରେ,
ସରାଳି, ଗାଙ୍ଗୋଇ, ହଂସ, କୋକ, ପାଣିକୁଆ,
ଆଦି ଜଳବିହଙ୍ଗମେ ସଦା ଝଙ୍କାରିତ,
ଶଙ୍କାହୀନେ ଯୂଥେ ଯୂଥେ ଚରନ୍ତି ଯା ତୀରେ
ଶୃଙ୍ଗଧର କୃଷ୍ଣସାର ସଙ୍ଗେ କୁରଙ୍ଗିନୀ;
ଧରଣୀସୀମାନ୍ତସେତୁ ସମ ଟେଙ୍କଭୂମି, (୧)

(୧) ଟେଙ୍କଭୂମି—ଟାଙ୍ଗୀ । ଗୁଳ୍ମଶ୍ୟାମଳ ଟାଙ୍ଗୀ ଦୂରରୁ ଦୀର୍ଘସେତୁ ପରି ଦିଶେ । ଖୋର୍ଦ୍ଧାଞ୍ଚଳରେ ଏଭଳି ଅନେକ ଟାଙ୍ଗୀ ଦେଖାଯାଏ ।

ଦିଗନ୍ତେ ଶ୍ୟାମାୟମାନ ବିଶାଳ-ଅଗ୍ରେଗେ,
ଦିଗ୍ବଳୟରେଖାରେ ଯାର ପୃଷ୍ଠେ ଦିଗପଟେ
ତୋଳିଛନ୍ତି ନୀଳଶିଖା ଦୂରଗିରିମାଳା,
ଗଜାବିଭ୍ରଦର ଭ୍ରମ ଚିତ୍ତେ ଉପୁଜାଇ, (୧)
କାହିଁ ଅବା ଶିଶୁଶୈଳ ଅନ୍ତରେ ଉଠାଳେ
ଧୂମ୍ରେ ସୁବିଶାଳ ଗିରି, ଜୀବନେ ଯେସନ
ଉପସ୍ଥିତ ଦୁଃଖ, ଅହା, ଅନ୍ତରେ ଜନ୍ମନ୍ତୁ
ଭବ-ଘୋରତର-ଦୁଃଖ-କଙ୍କାଳମୂରତି;
ଝୁଣାଲାଗି ହତ ହୋଇ ପୁଳିନ୍ଦକୁଠାରେ, (୨)
ଦୀନହୀନବେଶେ କାହିଁ ଶୈଳତଟେ ଉଭା
ସୁବିଶାଳ ଶାଳତରୁ କଙ୍କାଳର ମାଳା ;
ବାଟେ ତରଙ୍ଗିତ ଶସ୍ୟକେଦାର ଶ୍ୟାମଳ,
ମଧ୍ୟେ ଶୋହେ ମଞ୍ଚ, ଯହିଁ ଜଗି କୃଷିଯୋଗେ
ଶାଳଗୋପେ, ଛରଛର ଜଦାରୁଣ ଶୀତେ, (୩)

( ୧ ) ଗଜାବିଭ୍ରଦ—ମେଘାଙ୍କୁର । ବର୍ଷାର ଆଗମସୂଚକ ଦନ୍ତଭିନ୍ନଦୀର୍ଘ ବୃକ୍ଷାକାର ନୀଳମେଘ ।

( ୨ ) ପୁଳିନ୍ଦ—ବନ୍ୟଜାତି । ଝୁଣା ପ୍ରାପ୍ତି ନିମନ୍ତେ ବନ ଭୂଇଁଆଁ ପ୍ରଭୃତି ଜାତିମାନେ ଶାଳତରୁର ମୂଳଦେଶରେ ଚକ୍ରାକାରରେ ହୁକ କାଟି ଦେଇ ଅଗ୍ନି ଜାଳି ଦିଅନ୍ତି । ଏହି ସାମାନ୍ୟ ଉପାୟଦ୍ୱାରା ବୃହତ୍ ଶାଳ-ଗଛମାନ ଅତି ଅଳ୍ପସମୟରେ ଝାଉଁଳି ମରିଯାନ୍ତି । ମହାରଣ୍ୟମାନଙ୍କରେ ଏହିପରି ମୃତ ଶାଳଗଛ ଅନେକ ଦେଖାଯାଏ ।

( ୩ ) ଶାଳଗୋପ—ଯେମାନେ କ୍ଷେତ୍ରରେ ଶସ୍ୟ ଜଗନ୍ତି ।

ବରାହ, ଶମ୍ବର, ଋଷ୍ୟ, ଆଦି ଶସ୍ୟହାରୀ
ଜୀବଙ୍କୁ ତଡ଼ନ୍ତି କ୍ଷେତ୍ରୁଁ ବକଠ-କୁହାଟେ;
ସଶର-କମାଣଧର କାହିଁ ଗୋପଶିଶୁ,
ଜଗିଛନ୍ତି ଧେନୁପଲ ବିଜନ-ପ୍ରାନ୍ତରେ ;
କାହିଁ ଶସ୍ୟ କାଟୁଁ କାଟୁଁ କ୍ଷେତ୍ରେ କୃଷିବଳେ
ଭାଲେ କର ଦେଇ ଦୂରୁଁ ଦେଖନ୍ତି କୌତୁକେ;
ମୁଣ୍ଡାଇ ଇନ୍ଧନବୋଝ କାହିଁ ଅବା ବନ୍ୟ
ଗୁଞ୍ଜାମାଳେ ସମଣ୍ଡିତା ଶବରସୁନ୍ଦରୀ (୧)
ଅସୁଛନ୍ତି ଦଳେ ଦଳେ ଆଳାପି ମଧୁରେ ;
ଏହିରୂପେ ନାନାଦେଶ, ବନ, ଜନପଦ—
ତୀର୍ଥାଶ୍ରମଗିରିପୂର୍ଣ୍ଣ ମହାନଦୀଦ୍ରୋଣି (୨)
କ୍ରମେ କ୍ରମେ ଅତିକ୍ରମି, ପ୍ରବେଶିଲେ ବୀରେ
ଦକ୍ଷିଣାପଥର ଦ୍ୱାରଦେହଳୀରୂପିଣୀ
ମାଳଭୂମି, ତିନି ମହାସ୍ରୋତର ପ୍ରସୂତି, (୩)
ନିର୍ଝର-ପ୍ରସ୍ରବଣେ ପୂର୍ଣ୍ଣ, ଯହୁଁ ପ୍ରବାହିତ—
ଅସଂଖ୍ୟ-ଶଇଳସ୍ରୋତୁଁ ବାରି-କର ଦାନ,
ଉତ୍ତରେ ବହିଣ ଶୋଣ ମିଶେ ଗଙ୍ଗାଦେହେ,

(୧) ଗୁଞ୍ଜାହାରଭରଣା ବନ୍ୟନାରୀ ।
(୨) ଦ୍ରୋଣି—ଉପତ୍ୟକା ।
(୩) ମାଳଭୂମି—ଉଚ୍ଚଭୂମି ।

ପଶ୍ଚିମେ ବହଇ ରେବା, ପୂର୍ବେ ମହାନଦୀ; (୧)
ସ୍ଥାନେ ସ୍ଥାନେ ଗିରିପାଦେ କୁଞ୍ଜତଗଢରେ
( ତରୁଦେହେ ପୁଞ୍ଜୀଭୂତ ପାଣ୍ଡବତଛବି )
ଉଠୁଛି ତ୍ରେତାଗ୍ନି ଧୂମ ତପସ୍ୱି-ଆଶ୍ରମେ; (୨)
ଦୂର୍ବାଦଳେ, ଦେବାର୍ଚ୍ଚନକୁସୁମେ, ଅକ୍ଷତେ
ସ୍ଥଳେ ସ୍ଥଳେ ବିକ୍ଷୁରିତ ଅନ୍ନଗାର୍ହିକତ ;
ବିଚରନ୍ତି ମୃଗଶିଶୁ ନିରୁଦ୍‌ବେଗେ ବନେ
ଦଳେ ଦଳେ, କୁଶାଙ୍କୁରକବଳଲାଳସୀ ;
ବିସର୍ଜିତ ଠାବେ ଠାବେ ଶ୍ୟାମତରୁମୂଳେ
ଶିଳାଖଣ୍ଡ, ମସୃଣିତ ଇଙ୍ଗୁଦୀତଇଲେ ; ( ୩ )
କାହିଁ ବଲ୍କଳଛଟାଳେ ବାଳାତପପ୍ରଭ
ଜଳାର୍ଦ୍ରବଲ୍କଳ ଦୋଳେ ମୃଦୁବନବାତେ;
ପାନ୍ଥେ କୌତୂହଳୀ ଜାଣି ଦେବ ବିଶ୍ୱବସୁ
କହିଲେ ସମ୍ବୋଧି ତାହୁଁ—"ମହାସ୍ଥଳୀ ଏହୁ,
ମହିମା ଏହାର ଜାଣି, ବସନ୍ତି ଏ ଦେଶେ
ନାନାସ୍ଥାନେ ଋଷିବୃନ୍ଦ; ତ୍ରେତାରେ ଏ ପଥେ,
ଚିତ୍ରକୂଟୁଁ ପଞ୍ଚବଟୀ ବିଜେ ହେବା କାଳେ,

( ୧ ) ରେବା—ନର୍ମ୍ମଦା । ରେବା, ମହାନଦୀ, ଏବଂ ଶୋଣ ଏମାନେ ଏକ ମାଳଭୂମିରୁ ଭିନ୍ନ ଭିନ୍ନ ଦିଗରେ ପ୍ରବାହିତ ।

( ) ତ୍ରେତାଗ୍ନି—ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ଏହି ତିନି ଅଗ୍ନି ।

( ୩ ) ତପସ୍ୱିମାନେ ଇଙ୍ଗୁଦୀତୈଳ ବ୍ୟବହାର କରୁଥିଲେ ।

ପର୍ଣ୍ଣଶାଳା ରଚି ଏଥି ଥିଲେ ଦାଶରଥି; (୧)
ପ୍ରସ୍ତରେ ଅଙ୍କିତ ତାଙ୍କ ପଦାଙ୍କ ଏ ବନେ
ବନପୁଷ୍ପାଞ୍ଜଳି ଦେଇ ପୂଜନ୍ତି କିରାତେ,
ଶିଖିପୁଚ୍ଛତାଳବୃନ୍ତ ଢାଳି ଭକ୍ତିଭାବେ;
ଦାଶରଥି ଶରେ ହତ ହୋଇ ଏହି ସ୍ଥଳେ
ଲଭିଣ ବିରାଧ ମୁକ୍ତି ଗଲା ଦିବ୍ୟଲୋକେ; (୨)
ଅଶୋକ, ମାଧବୀ, ନାଗକେଶରବଲ୍ଲରୀ—
ଦୋଳନେ ଦୋଳନ୍ତି ଏଥି ନିଭୃତେ ଅପ୍ସରୀ
ମଧୁମାସେ, ସ୍ୱମାଧୁର୍ଯ୍ୟ ଗାଇ ମନ୍ଦ୍ରତାନେ,
ଫଗୁଖେଳ ରଚି ବନପ୍ରସୂନପରାଗେ;
ନବକିଶଳୟେ, ଦେଖ, ବିମ୍ବଙ୍କେ କେମନେ
ଚୌଦିଗେ ଅରଣ୍ୟଭୂମି, ଦିଗ୍‌ବଳୟଯାଏ;
ମୈଥିଳୀ ସୁନ୍ଦରୀ ଯେବେ ତୋଳୁଥିଲେ ଏଥି
ବନପୁଷ୍ପ, ଝରି ତାଙ୍କ ଶ୍ରୀକରୁ ଅଳତା
ରଞ୍ଜିଲା କି ତରୁ ଲତା ଏ ମଞ୍ଜୁଳରାଗେ ?
ତାଙ୍କ ବରେ ସେହି କାଳୁଁ ଅଛି ମୋତେ ମନା
ଦାବାନଳରୂପେ ଏଥି ଫଚରିବାପାଇଁ;
ଦସ୍ୟୁବନ୍ଦୀ ମୈଥିଳୀର ଶ୍ରୀହସ୍ତଲାଳିତ

(୧) ଚିତ୍ରକୂଟ—ପ୍ରୟାଗର ଦକ୍ଷିଣରେ ଅବସ୍ଥିତ । ମନ୍ଦାକିନୀ ନଦୀ ଏହିଠା-ରେ ପ୍ରବାହିତା। ବନଯାତ୍ରା ସମୟରେ ରାମଚନ୍ଦ୍ର ଚିତ୍ରକୂଟରେ ଅବ-ସ୍ଥାନ କରିଥିଲେ ।

(୨) ବିରାଧବଧ ବୃତ୍ତାନ୍ତ ରାମାୟଣରେ ଅନୁସନ୍ଧେୟ ।

ଅଦ୍ୟାପି ଏ ବନେ ଛନ୍ତି ବୃଦ୍ଧ କୃଷ୍ଣସାର
ଜରାଜୀର୍ଣ୍ଣ, ଶୁଣି ଯେନ୍ତୁ ଜଳଦ-ଅଁଗନେ
ସୁଗମ୍ଭୀର ଘନଘୋଷ, ସ୍ମରନ୍ତି ବିଷାଦେ
ବ୍ରହ୍ମାଣ୍ଡବିବରବ୍ୟାପି-କୋଦଣ୍ଡଟଙ୍କାର
ଲଙ୍କାପତି-ଅରାତିର, ତୃଣାହାର ତେଜି,
ନିର୍ନିମେଷେ ଏକଧ୍ୟାନେ ମୁଞ୍ଜନ୍ତି ଲୋଚନ;”
ଏହି କଥା ଶୁଣି ତହିଁ ପଞ୍ଚପାଣ୍ଡୁସୁତେ
ପାଞ୍ଚାଳୀ ସହିତେ ଭ୍ରମି ଆଶ୍ରମେ ଆଶ୍ରମେ
ଋଷି-ଋଷିପତ୍ନୀପଦ ବନ୍ଦିଲେ ଆଦରେ;
ତହୁଁ ପଥ ଅତିବାହି, ରଖି ବାମଭାଗେ
ନିଷଧ, ବିଦର୍ଭଦେଶ, ଗଲେ ପଶ୍ଚିମେ, (୧)
ଲଙ୍ଘି ପଥେ ଇନ୍ଦ୍ରାଦ୍ରି ଯାର ତଟବନେ (୨)
ଭବାନୀଭବନ ଶୋଭେ ମହାଶକ୍ତିପୀଠେ,
କେତେଦିନ ଅନ୍ତେ ପାନ୍ଥେ ମିଳିଲେ ପ୍ରଦୋଷେ
ତପତୀତଟିନୀଙ୍କରେ ଅଗ୍ନିଦେବସଦ୍ମ; (୩)

(୧) ନିଷଧ ଏବଂ ବିଦର୍ଭଦେଶ ମଧ୍ୟଭାରତବର୍ଷରେ ଅବସ୍ଥିତ ଥିଲା । ବିଦର୍ଭର ଆଧୁନିକ ନାମ ବେରାର ।

(୨) ଇନ୍ଦ୍ରାଦ୍ରି—ଅନ୍ୟ ନାମ ସାତପୁରା ପର୍ବତ । ଏହି ପର୍ବତର ଉପତ୍ୟକାରେ ଖଣ୍ଡବା ନାମକ ସ୍ଥାନରେ ଭବାନୀଦେବୀଙ୍କର ମନ୍ଦିର ଅବସ୍ଥିତ । ଖଣ୍ଡବା ଭାରତବର୍ଷର ଅନ୍ୟତର ଶକ୍ତିପୀଠ । ମଧ୍ୟଭାରତବର୍ଷର 'ଠଗ'ମାନେ ଏହି ଦେବୀଙ୍କର ଉପାସକ ଥିଲେ ।

(୩) ତପତୀ—ଏହି ନଦୀ ପଶ୍ଚିମମୁଖରେ ପ୍ରବାହିତ ହୋଇ ଆରବ୍ୟ-ସାଗରରେ ପତିତ ହୋଇଅଛି ।

ତପସ୍ୱର ପୂତସ୍ରୋତେ ତର୍ପଣ କରାଇ
ବସନ୍ତେ ପାଣ୍ଡବେ, ଦେବ ବୈଶ୍ୱାନର ତହୁଁ
ବୋଇଲେ ବାରୁଣୀକରେ ଅଙ୍ଗୁଳି ନିର୍ଦ୍ଦେଶି
"ସନ୍ଧ୍ୟାରେ ଅରୁଣ ଏହି ବାରୁଣୀ-ଅମ୍ବରେ
ସନ୍ଧ୍ୟାତାରା ତୁମ୍ଭେ, ଯାର ନୀଳୋଜ୍ଜ୍ୱଳଶିଖା,
ବୋଲାଏ ସହ୍ୟାଦ୍ରି ଏହୁ ଅଚଳସମାଜେ, (୧)
ମହାପ୍ରସ୍ରବନ୍ତ ଗିରି, ଦକ୍ଷିଣାପଥର
ପଶ୍ଚିମପ୍ରାଚୀରରୂପେ ସ୍କନ୍ଧେ ମହୀତଳେ,
ବିସ୍ତୃତ ଦକ୍ଷିଣେ ଏହୁ ସେତୁବନ୍ଧଯାଏ,
ଏହା ଦେହୁ ବହି, ତିନି ମହାପ୍ରବାହିନୀ
ପୂର୍ବେ ଯାଇ ମିଶିଛନ୍ତି ପୂର୍ବପାରାବାରେ,
ଜନସ୍ଥାନଦ୍ରୁମରାଜି-ଧାତ୍ରୀସ୍ୱରୂପିଣୀ (୨)
ସରିଦ୍ୱରା ଗୋଦାବରୀ, କୃଷ୍ଣା କୃଷ୍ଣବେଣୀ, (୩)
ମଳୟବଳୟରୂପା ବିମଳା କାବେରୀ, (୪)

(୧) ସହ୍ୟାଦ୍ରି—ପଶ୍ଚିମଘାଟପର୍ବତ । ଗୋଦାବରୀ ପ୍ରଭୃତି ନଦୀ ଏହି ପର୍ବତରୁ ପ୍ରବାହିତ ।

(୨) ଜନସ୍ଥାନ—ଦଣ୍ଡକାରଣ୍ୟର ଅଂଶବିଶେଷ । ଗୋଦାବରୀ ଜନସ୍ଥାନ ମଧ୍ୟରେ ପ୍ରବାହିତା ।

(୩) କୃଷ୍ଣବେଣୀ—ସ୍ୱନାମପ୍ରସିଦ୍ଧ ନଦୀ, ପୂର୍ବମୁଖରେ ପ୍ରବାହିତ ହୋଇ ମହୋଦଧିରେ ପତିତ ହୋଇଅଛି । ଆଧୁନିକ ନାମ କୃଷ୍ଣା ।

(୪) କାବେରୀ ମଳୟପର୍ବତର ପାଦଦେଶରେ ପ୍ରବାହିତା । ଅଗସ୍ତ୍ୟାଶ୍ରମ ଏହିଠାରେ ପ୍ରତିଷ୍ଠିତ ଥିଲା । ଲୋପାମୁଦ୍ରା ଅଗସ୍ତ୍ୟପତ୍ନୀ । ମଳୟପର୍ବତ

ଚନ୍ଦନକାନନ ଯାର ଗୃହୁଣ୍ଡିରଭୂମେ
ସମୁଜ୍ଜ୍ୱଳ କୁମ୍ଭଯୋନିମୁନିପ୍ରଣୟିଣୀ
ସତୀଶିରୋମଣି ଧନ୍ୟ ଲୋପାମୁଦ୍ରାରୂପେ;
ଏହି ଗିରିପ୍ରାନ୍ତବନୁ ନେଇଥିଲା ହରି
ରକ୍ଷୋଦ୍ଭବ୍ୟ-ବନରାଜି-ଦାବାନଳଶିଖା—
ସୀତାଙ୍କୁ ତ୍ରେତାରେ, ଛଳି ରାମେ, ରାମାନୁଜେ,
ତ୍ରିଦଶବୀର୍ଯ୍ୟନିକଷ ନୈକଷେୟ ବଳୀ; (୧)
ସୁଗ୍ରୀବପ୍ରମୁଖ-ପଞ୍ଚବୀର ଅଧ୍ୟାଷିତ,
ଏହି ଗିରିପାଦଗିରି ଶୈଳ ଋଷ୍ୟମୂକେ (୨)
ଫିଙ୍ଗିଥିଲେ ଅଙ୍ଗୁ ଦେବୀ ନିଦର୍ଶନଲାଗି,
ସେକାଳେ, ଆକାଶଗାମିପୁଷ୍ପକବିମାନୁ
ତଡ଼ିଲ୍ଲତା-ତାରାପୁଞ୍ଜଗଞ୍ଜି ବାସଭୂଷା;
ଲୋଟନ୍ତି ଏ ଗିରିପାଦେ ନୀଳରତ୍ନାକର, (୩)
ଯିବ କନକକାର୍ଯ୍ୟ ମୂର୍ତ୍ତି ତାଙ୍କର ସଦନେ;
ପ୍ରଭାତେ ବାୟବ୍ୟମୁଖେ ଦ୍ୱାରାବତୀପୁରେ

ଚନ୍ଦନ ନିମନ୍ତେ ପ୍ରସିଦ୍ଧ । ଅଗସ୍ତ୍ୟ କଳସରୁ ଜାତ ହୋଇଥିବାର ପୌରାଣିକ କିମ୍ବଦନ୍ତୀ ଅଛି ।

(୧) ନିକଷାପୁତ୍ର ଲଙ୍କେଶ୍ୱର ଦେବବୀର୍ଯ୍ୟର ନିକଷ ପ୍ରାୟ ଥିଲେ ।

(୨) ସହ୍ୟାଦ୍ରିର ପାଦପଙ୍କତ, ପମ୍ପାସରୋବରର ସନ୍ନିହିତ । ସୁଗ୍ରୀବାଦି ପଞ୍ଚମହାବୀର ବାଳିଙ୍କ ଭୟରେ ଏହି ପର୍ବତରେ ଆଶ୍ରୟଗ୍ରହଣ କରିଥିଲେ ।

(୩) ରତ୍ନାକର—ଆରବ୍ୟସାଗର ।

ଯିବ ତୁମ୍ଭେ ଏହିଠାରୁ;—କାଲଠାରୁ ଆଉ
ତୁମ୍ଭ ସଙ୍ଗେ ଭେଟ ମୋର ନୋହିବ ମରତେ,
ଦ୍ୱାପରର ଶେଷ ଅଛି, ଏହି କିଶାଯୋଗେ
ଓହ୍ଲାଇବେ ଦଳବଳେ କଳି ଭରଧାମେ,
ନିଷିଦ୍ଧ କଳିରେ ଦେବ ମାନବର ଭେଟ,
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ, କୁରୁମଣି,
ଏହି ଶୈଳଶୃଙ୍ଗେ ବସି ଦେଖିବ କୌତୁକେ,
ତବେ କଳି-ଅବତାର ମୋର ଦିବ୍ୟାଲୋକେ,
ସତ୍ତ୍ୱଗୁଣୋଜ୍ଜ୍ୱଳ ଏକା ତୁମ୍ଭର ଲୋଚନେ
ସହିବ ସେ ଦିବ୍ୟଜ୍ୟୋତି, ଚାଲ ବେଗ କରି ।



## ଚତୁର୍ଥ ସର୍ଗ ।



ସନ୍ଧ୍ୟାଦ୍ରିଶିଖରେ ବସି, ଦିବ୍ୟାଲୋକଯୋଗେ
ଦେଖିଲେ ପାଣ୍ଡବଗଣ ଅନଳପ୍ରସାଦେ
ସ୍ୱର୍ଗେ ଅଦ୍ଭୁତ ଦୃଶ୍ୟ, ଦିଶିଲା ଆକାଶେ
ତାରକାଗୁମ୍ଫିତ-ଗ୍ରହ-ଚନ୍ଦ୍ରାତପତଳେ
ସ୍ୱର୍ଣ୍ଣମେଘେ ଦେବସଭା, ବିଶ୍ୱଜନ୍ତ ତହିଁ
ଦେବଗଣ, ଚିନ୍ତାମଗ୍ନ ସର୍ବେ ଏକମନେ,
ଚକ୍ରାକାରେ ବେଢ଼ିଅଛି ସର୍ବଦେବଦେହେ
ସୁନ୍ଦର ପ୍ରଭାମଣ୍ଡଳ, ବିଧୁଙ୍କୁ ଯେସନ
ବେଢ଼ଇ ବିବିଧବର୍ଣ୍ଣେ ଉଜ୍ଜ୍ୱଳପ[illegible]
ଜ୍ୟୋତ୍ସ୍ନାକାଳେ, ବରଷାର ଆଗମସୂଚକ; (୧)
ଏକ ଏକ କରି ଦେବ ସୁବର୍ଣ୍ଣଦୀଧିତି (୨)
ପୌରବେ ଚାହାଁଇ ଦେଇ କହିଲେ ଏସନ (୩)
"ତୁଷାରଧବଳକାନ୍ତି, ଦେଖ, ସିଂହାସନେ

(୧) ଚନ୍ଦ୍ରମଣ୍ଡଳକୁ ଲୋକେ ବର୍ଷାର ସୂଚକ ବୋଲି ବିଶ୍ୱାସ କରନ୍ତି ।
(୨) ସୁବର୍ଣ୍ଣଦୀଧିତ—ଅଗ୍ନି ।
(୩) ପୌରବ—ଯୁଧିଷ୍ଠିର ।

ବିଶ୍ୱକାନ୍ତ 'ଧର୍ମ୍ମ'ଦେବ ଅମଳବସନେ,
କରେ ଜ୍ୟୋସ୍ନାଶୁଭ୍ରଦଣ୍ଡ, ବଦନମଣ୍ଡଳେ
ବିରାଜେ ଅପୂର୍ବ୍ବଜ୍ୟୋତି ପ୍ରଶାନ୍ତ ପାବନ;
ସ୍ଫୀତବକ୍ଷ ଅନୁଚର ଧର୍ମ୍ମଙ୍କ ଛମୁରେ
ଉଭା ଯେହ୍ନୁ, ହବେ ସେହି 'ସାହସ' ଆଖ୍ୟାତ;
ଧର୍ମ୍ମପାଶେ 'ସତ୍ୟ' ମହାତେଜସ୍ୱୀ ନିର୍ଭୀକ,
ସ୍ୱଚ୍ଛବତ ଦିଶେ ଯାଙ୍କ ସମସ୍ତ ବିଗ୍ରହ,
ହେଲେହେଁ ଭୂଷଣହୀନ ନୈସର୍ଗିକରୂପେ
ଦିଶଇ ସୁନ୍ଦର ଅତି ସେ ଦିବ୍ୟମୂରତି;
ସତ୍ୟଙ୍କ ଅଦୂରେ ଦେଖ ତୁଳାଦଣ୍ଡଧାରୀ,
ନିସ୍ତରଙ୍ଗହ୍ରଦ ସମ ଗମ୍ଭୀରମୂରତି
'ନ୍ୟାୟ'ଦେବ, ନେତ୍ର ବନ୍ଧ ଘନକୃଷ୍ଣବାସେ
ସ୍ଥାନ ବଡ଼, ନିଜ ପର ଜ୍ଞାନର ରୋଧକ; (୧)
ତାଙ୍କ ପାଶେ 'ତପଃ' କ୍ଷୀଣବପୁ, ଜଟାଧାରୀ,
ମୁଞ୍ଜ-ମେଖଳାରେ ବଦ୍ଧ ଶୋଭେ କଟିଦେଶେ (୨)
ବଲ୍କଳ, ଲମ୍ବିତ ଲମ୍ବଶ୍ମଶ୍ରୁ ବକ୍ଷସ୍ଥଳେ;
ତପଃ ପାଶେ 'କ୍ଷମା' ହସ୍ତେ ଆବରଣପଟ,
ବ୍ୟସ୍ତ ସଦା ପରଦୋଷ ଆବରିବାପାଇଁ;
ତାଙ୍କ ପାଶେ 'ଦୟା'ଦେବୀ ସ୍ନିଗ୍ଧଜ୍ୟୋତିର୍ମ୍ମୟୀ,

(୧) ସ୍ଥାନ ବଡ଼, ନିଜ ପର ଏହି ଜ୍ଞାନର ରୋଧକ ଘନକୃଷ୍ଣବସନରେ 'ନ୍ୟାୟ'-ଦେବଙ୍କର ନେତ୍ର ବନ୍ଧ ।

(୨) ମୁଞ୍ଜ—ତୃଣବିଶେଷ ।

ମୁକ୍ତାଫଳଗଞ୍ଜି-ଅଶ୍ରୁ ଝରେ ନେତ୍ରଯୁଗେ
ପରଦୁଃଖେ, ବାହୁ ତୋଳି ଡାକୁଛନ୍ତି କି ସ୍ନେ
ଦୁଃଖିଜନେ, ଆଶ୍ରା ଦେବାପାଇଁ ନିଜକୋଡ଼େ !
ପୂର୍ଣ୍ଣକୁମ୍ଭ ଜଳ ଇଡି ପ୍ରକ୍ଷାଳନ୍ତି ଦେହ
'ଶୌଚ'ଦେବ, ସଙ୍କୁଚିତ ସଦା ଅନାଗୃରେ;
ନଗ୍ନଙ୍କୁ କାଟନ୍ତି ଯେହୁ, ବସ୍ତ୍ର, ଅଭରଣ,
ନିଯୋଜିତ-ଦେହମନ ପରସେବାଲାଗି,
'ତିତିକ୍ଷା' ସେ ରତ ସଦା ମହାତ୍ୟାଗବ୍ରତେ; (୧)
ସାଧୁଜନସେବ୍ୟ ଏହି ପବିତ୍ର 'ଆର୍ଜ୍ଜବ' (୨)
ଶାଳସମ ଋଜୁଦେହ, ଋଜୁଦୃଷ୍ଟିରେଖା;
ବିଶ୍ୱଶୋଭିସ୍ୱଣୀ, ଦେଖ, ଦେବୀ 'ପଦ୍ମାଳୟା'
ଆଭରଣପ୍ରଭାଜାଲେ ନଭଃ ଉଦ୍ଭାସିନୀ,
ଫୁଲ୍ଲ ରଙ୍ଗ ଶତଦଳ ଶୋଭେ ଦକ୍ଷକରେ,
ଦକ୍ଷେତରେ ଧାନମେଣ୍ଟି, ଦେବୀଙ୍କ ପ୍ରସାଦେ (୩)
ମେଘେ ରାଜେ ଇନ୍ଦ୍ରଧନୁ, ପୁଷ୍ପରାଜି ବନେ,
ଜଗତଜୀବନଯଷ୍ଟି ଶସ୍ୟ ଶସ୍ୟକ୍ଷେତେ,
ନରତେ ଅସ୍ଥିରା ଦେବୀ, ଆପନ୍ନ ଆସନେ

(୧) ମହାତ୍ୟାଗବ୍ରତେ—ଆତ୍ମୋତ୍ସର୍ଗବ୍ରତରେ ।
(୨) ଆର୍ଜ୍ଜବ—ସରଳତା ।
(୩) ଲକ୍ଷ୍ମୀ ଶୋଭା ଏବଂ ସମ୍ପଦର ଅଧିଷ୍ଠାତ୍ରୀ । ଶତଦଳ ଶୋଭାବ୍ୟଞ୍ଜକ, ଧାନମେଣ୍ଟି ସମ୍ପଦବ୍ୟଞ୍ଜକ ।






ବିରଚେ ତ କରନ୍ତି ସ୍ତୁତି, ସ୍ୱଭାବେ ଚପଳା; (୧)
ଶ୍ୱେତପଦ୍ମାସୀନା ଏହି ଦେବୀ 'ସରସ୍ୱତୀ'
କୁନ୍ଦେନ୍ଦୁ-ତୁଷାର-ପ୍ରଭା, ଶୁଭ୍ରବସ୍ତ୍ରାବୃତା,
ଏକହସ୍ତେ ଗ୍ରନ୍ଥ, ଅନେ ବୀଣା ସପ୍ତସ୍ୱରା,
ଅସାଧ୍ୟ ସାଧନାଫଳେ ତୁଷ୍ଟ ହୋଇ ଥରେ
ଦେଇଥିଲେ ଏହି ମୃତସଞ୍ଜୀବନୀବୀଣା
ନବତାନେ ବାଇବାକୁ ବଲ୍ମୀକପ୍ରଭବ —
ମୁନିବରେ, ପୁଣି ଥରେ କୃଷ୍ଣଦ୍ୱୈପାୟନେ, (୨)
ସେଭଳି ସେବକ ଆଉ ନ ଦେଖି ଭାରତେ
ଭାରତୀ ସେ ବୀଣା ଏବେ ଧରନ୍ତି ଶ୍ରୀକରେ;
ଏ ଆଦି ଯାବନ୍ତ ଦେବ ଦେବୀ ଭାରତର
କଳ-ଆଗମନଭୟେ କରନ୍ତି ମନ୍ତ୍ରଣା
କେ କାହିଁ ଲୁଚିବେ, କେଉଁ ବିଜନପ୍ରଦେଶେ;
ବିଳମ୍ବ ତ ନାହିଁ ଆଉ ! ଭାରତବଦନେ
ବିରାଜଇ ଯେଉଁ ଶିରୀ, ସେବ ସିନା ଲଭ
ଅଳ୍ପକ୍ଷଣେ, ଗଲେ ମାତ୍ର ରହିବ ତା ସ୍ମୃତି !
ଧର୍ମ୍ମର ଏ ଉପବନ ହେବ ପରିଣତ

(୧) ଲକ୍ଷ୍ମୀଙ୍କର ଚଞ୍ଚଳାନାମ ପୁରାଣପ୍ରସିଦ୍ଧ ଏବଂ ତାହାଙ୍କର ଚଞ୍ଚଳତା ଅନୁଭବସିଦ୍ଧ ଅଟେ ।

(୨) ସରସ୍ୱତୀ ବାଲ୍ମୀକି ଏବଂ ବ୍ୟାସଙ୍କୁ ତାହାଙ୍କର ଯୋଗ୍ୟଭକ୍ତ ଜାଣି ସ୍ୱକୀୟ ବୀଣା ନବତାନରେ ବଜାଇବା ସଙ୍କାଶ ଦେଇଥିଲେ । ଭାରତରେ ଏମାନଙ୍କର ସମତୁଲ୍ୟ ସରସ୍ୱତୀଭକ୍ତ ଆଉ ନାହାନ୍ତି ।




ପାପ-ମରୁଭୂମେ ଏବେ, ଲକ୍ଷ୍ମୀଲୀଳାସ୍ଥଳ;
ଶୁଖିଯିବ, ଅହା, ଏହି କ୍ରୂର-ଅବଗ୍ରହେ !” (୧)
ଏହା କହୁଁ କହୁଁ ନଭଃ ଭୀଷଣ ସମସେ
ଗଲା ପୂରି, ବିକଟାଳ-କଙ୍କାଳ-ଆକୃତି
ଊର୍ଦ୍ଧ୍ୱେ ଉଠାଇଲେ କାଳ ନିଜ ଦଳବଳେ,
ଲୋହିତ ମଙ୍ଗଳଗ୍ରହ ପ୍ରାୟେ ଭୟାବହ
ଅମଙ୍ଗଳ ନେତ୍ର ଚକ୍ଷୁ, ନିଃସରଇ ଯହୁଁ
ଭୀମଧୂମକେତୁପୁଚ୍ଛସମ ଜ୍ୟୋତିରେଖା,
କୃତାନ୍ତର କରପତ୍ର ପ୍ରାୟେ ତ୍ରାସପ୍ରଦ (୨)
ଅବର୍ତ୍ତସନ୍ଧିରଭ୍ରୁଣେ ତୀକ୍ଷ୍ଣଦନ୍ତାବଳୀ; (୩)
ଆସୁଛନ୍ତି ଯେତେ ବେଗେ କାଳ ପଛେ ପଛେ
କାଳ-ଅନୁଚରବୃନ୍ଦ, ଯଦା ଧର୍ମଦ୍ରୋହୀ,
ନାଳତାଳଜଙ୍ଘାଭୂରୁ-ଗୃଭୁଗୃପଧାରୀ
ଅଗ୍ରେ ବଶ୍ୱଜୟୀ ‘କାମ’, ପୁଷ୍ପର ମୁକୁଟ
ଶୋଭେ ଶିରେ, ପୁଷ୍ପମାଳା ଲମ୍ବିତ ଉରସେ;
ଆସୁଛନ୍ତି ଚଉପାଶେ ବେଢି ନବ୍ୟାଙ୍ଗନା
କୁରଙ୍ଗତରଙ୍ଗେକ୍ଷଣୀ, ଚମ୍ପକବରଣୀ,
ବିମ୍ବାଧରୀ, ଘନାଲମ୍ବକେଶୀ, ସ୍ମେରାନନା

(୧) ଅବଗ୍ରହ—ଅନାବୃଷ୍ଟି ।
(୨) କରପତ୍ର—କରତ ।
(୩) ଅବର୍ତ୍ତ—ଭଉଁର ।

ବାରାଙ୍ଗନାଦଳ ରତିଜିଣି ରୂପବତୀ;
ମୃଦୁବକ୍ଷ କୋରକତ ଉରଜ-କୋରକେ,
ଲାଳସାର ସ୍ୱର୍ଣ୍ଣଗାଡ଼ୁ କିଅବା ସେ ବେନି? (୧)
ସୁବଳଚରମ୍ପାଉଠୁ ଅବୃତ ଦୁକୂଳେ,
ଯେଉଁ ଆବରଣ ଭେଦ, ନଭିତପ୍ରଦେଶେ
ସଂଚରଣେ ଲୋଲ ସଦା କାମୁକକଳ୍ପନା !
ବୀଣାଧ୍ୱନି ସଙ୍ଗେ ଉଠେ ସଂଗୀତର ଧ୍ୱନି
ସେ ଦଳୁଁ "ହେ ଯୁବାକୁଳ, କ୍ଷଣମାତ୍ରସ୍ଥାୟୀ
ଯୁବାକାଳ, ମଧୁକାଳ ଏହିଁଠି ଜୀବନେ !
ଏହା ଜାଣି, ଅନେ ଡେକି, ମଜ୍ଜି ପ୍ରେମରସେ
ପୂରଅ ଭୋଗର ସ୍ପୃହା, ପୁରୁଷଜୀବନେ
ପୁରୁଷାର୍ଥ ଏକା ଗିନା ବାମା-ଉପାସନା !
କାମାତୁରା ନବୀନାଙ୍କ କାମନା ପୂରଇ
ସାର୍ଥକ ପୁରୁଷପଣ କର ଏ ବୟସେ;
ପ୍ରଭାତଶିଶିରେ ସ୍ନାନ, ସଜପୁଷ୍ପ ଯେବେ
ବୃନ୍ତାସନେ ବସିଥାଇ ଅଳକ ଅନାଇ
ପ୍ରେମୋତ୍ସୁକେ, ବିଳମ୍ବଇ କେବେ କି ସେ ଅଳି
ଖଣ୍ଡରେ ମଉଳି ପୁଷ୍ପ ବାସି ହେବାଯାଏ ?
ମଦାଲସୀଭମ୍ବସ୍ତନ-ସ୍ୱର୍ଣ୍ଣମେରୁରୂପୀ
ଏ ପ୍ରତ୍ୟକ୍ଷସ୍ୱର୍ଗ ଛାଡ଼ି, କେଉଁ ଭ୍ରମେ ପଡ଼ି,

(୧) କାମୁକମାନଙ୍କର ଲାଳସା ବନ୍ଧନର ସୁବର୍ଣ୍ଣଗାଡ଼ୁ ପରି ।






କେହ୍ବ ଯତି, ନିରତେ ତୁମ୍ଭେ ରତ ଘୋରତପେ,
ଅପ୍ରତ୍ୟକ୍ଷ ଅନିଶ୍ଚିତ ସ୍ବର୍ଗଭୋଗ ଆଶେ ?
କି ଭୋଗ ସେ ସ୍ବର୍ଗେ ଅଛି ଏ ଭୋଗକୁ ବଳି ?
ହେ ପଣ୍ଡିତକୁଳ, ଅଦ୍ଧବଞ୍ଚନାରେ ପଡ଼ି,
ଗ୍ରନ୍ଥକୀଟ ହୋଇ କିମ୍ପା କଟାଉଛ ବୃଥା
ଯୁବାକାଳ, କବିତାର ସକଳ-ଆମୋଦେ !
ସୁନ୍ଦରୀ-ଅଧରମଧୁ ସଙ୍ଗେ କି ହେ ସମ
କାବ୍ୟରସ ? ଆନ କାବ୍ୟ ଫିଙ୍ଗିଦେଇ ଦୂରେ,
ଯୁବତୀଯୌବନ-କାବ୍ୟ ପଢ ଅବିରତେ;
ହେ ବୀରେ, ବିଫଳେ କିପାଁ ମର ଅନୁସରି
ରଣଭୂମି-ମରୁଭୂମେ ଯଶ-ମରୀଚିକା,
ସମ୍ମୁଖେ ସୁଲଭ ଥିବି ସୁଧାତରଙ୍ଗିଣୀ ?
ମହାବିଭୀଷିକାମୟୀ ରଣସ୍ଥଳୀ ତେଜି,
କେଶରବନ୍ଧନେ ପଶ ସେ ସଂଗ୍ରାମେ, ଯହିଁ
ରସିକା ସଙ୍ଗତେ ଯୁଝି କାମକୁତୂହଳେ,
ଜିଣୁଁ ପରାଜୟେ କୃତୀ ହୁଅନ୍ତି ରସିକେ;"
ତାଳଇ ଶ୍ରବଣେ ସୁଧା କଣ୍ଠ-ଯନ୍ତ୍ର-ଧ୍ବନି
ସ୍ବନେ, ସୁତାନେ ମିଶି ଭୂଷଣଶିଞ୍ଜିତେ,
କଜ୍ଜ୍ବଳକେଶୀଙ୍କ ରୂପେ ସମୁଜ୍ଜ୍ବଳ ଦଶେ
ସେ ଦେଶ, ବସନ୍ତେ କୁଞ୍ଜ ପୁଷ୍ପପୁଞ୍ଜେ ଯଥା,
ପୁଷ୍ପାବୃତଶାଖ ପ୍ରାୟେ ବାହ୍ୟେ ଚୋରା ବାମା ।




ହସ୍ତେ ଶୋଭେ ପୁଷ୍ପ, ମାତ୍ର ବସ୍ତ୍ର ଢଳେ ଢଳେ
ଗଳ ଗଳ ଗଳୁଛନ୍ତି ଅଲକ୍ଷିତରୂପେ
ପରିଚ୍ଛଦଦଳ 'ମେହ' 'ଉପଦଂଶ' ଆଦ !
ତାମ୍ବୂଳକରଙ୍କଧର ଚଳନ୍ତି ପଶ୍ଚାତେ
ଧନିକନନ୍ଦନଗଣ ଶମ୍ଭଳୀଶୋଷିତ- (୧)
ସର୍ବସ୍ୱ, ପାଣ୍ଡୁର ରକ୍ତ ଶରଦଭ୍ର ଯଥା, (୨)
ସଙ୍ଗେ ଅଜୀବନ ବକା ରୂପାଜୀବାପଦେ !
କାମପ୍ରତି ବୈଶ୍ୱାନର ଅଙ୍ଗୁଳି ନିର୍ଦ୍ଦେଶି
କହିଲେ ପୌରବେ "ମହାଦୁଷ୍ଟମତି ଏହୁ !
ଥରେ ମୁହିଁ ଚନ୍ଦ୍ରଚୂଡ଼ନୟନୁ ବାହାରି, (୩)
ଦହିଥିଲି ଏ ଦୁରନ୍ତେ, ତାଙ୍କୁ ସେହି ହେତୁ
ଡରେ ଦୁଷ୍ଟ, ତାଙ୍କ ଭକ୍ତପାଶୁଁ ରହେ ଦୂରେ ।
ଆକ୍ରୋଶେ ଗରଜି 'କ୍ରୋଧ' ଆସେ କାମପଛେ

(୧) କୁଟ୍ଟଣୀମାନଙ୍କଦ୍ୱାରା ହୃତସର୍ବସ୍ୱ ।

(୨) କାମୁକମାନେ ଇନ୍ଦ୍ରିୟାସକ୍ତ ହୋଇ କ୍ରମଶଃ ନିର୍ବୀର୍ଯ୍ୟ ହୁଅନ୍ତି ଏବଂ ସେମାନଙ୍କର ଦେହ ବିବର୍ଣ୍ଣ ହୋଇ ପାଣ୍ଡୁର ଦିଶେ । ସେମାନଙ୍କ ଦେହରେ ରକ୍ତ ନ ଥାଏ । ଶରଦଭ୍ର ଯେପରି ଜଳଶୂନ୍ୟ ଏବଂ ପାଣ୍ଡୁର, କାମୁକମାନେ ସେହିପରି ରକ୍ତଶୂନ୍ୟ ଏବଂ ବିବର୍ଣ୍ଣ ହୋଇଯାନ୍ତି ।

(୩) ହରକୋପାନଳରେ ମଦନ ଦଗ୍ଧ ହୋଇଥିବାର କଥା ପୁରାଣରେ ଅନୁସନ୍ଧେୟ ।

ରକ୍ତଚକ୍ଷୁଃ, ଯତେ କି ସେ ଦହିବ ଜଗତ !
ବଜ୍ରର ଔରସେ, ବାତ୍ୟାଗର୍ଭେ ଜାତ ହୋଇ,
ବଡ଼ବାରସ୍ତନ୍ୟେ ବଢ଼ିଥିଲା ଯେ ସାଗରେ, (୧)
ଭୂକମ୍ପ-ଦୋଳରେ ସୁଖେ ଦୋହଲି ଶୈଶବେ,
ମହାଭସ୍ମଙ୍କର ରିପୁ ! ରକ୍ତିମା ଜନ୍ମାଇ
ଉପୁଜାଏ ବିରକ୍ତିଙ୍କ, ବହ୍ନିଶିଖା ଜାଳ
ଉପୁଜାଏ ତମଃ, ଜ୍ଞାନ ବିବେକବିଲୋପୀ; (୨)
ସହଚରରୂପେ ତାର ଅସିର ସଙ୍ଗତେ
'ହତ୍ୟା', କରବାଳହାତେ, ରକ୍ତଲିପ୍ତବାସେ;
ତମ୍ଭ ଗ୍ରାମ୍ୟେ ଫଁଫଁସ୍ୱନେ ଜଣ୍ୱାସି ସଘନେ
ଆସୁଛନ୍ତି ପରିଜନେ, ବହୁଛି ଅଧରୁ
ଲାଳଧାର, ଜଳଦନ୍ତେ ଜନକୁ କାମୋଡ଼ି,
କଳାଭୃଙ୍ଗିନୀ ଗ୍ରାମ୍ୟେ ଭ୍ରୂକୁଟି ଲମ୍ବିତେ,
ଶୃଙ୍ଗହୀନ ହୋଇ ସୁଦ୍ଧା, ଏକକୁ ଅନେକ
ବନିତେ-ଉଦ୍ୟତ, ଯେସନ୍ତେ ସବତ୍ସା ଧେନୁକା; (୩)

(୧) ବଡବା— ସମୁଦ୍ରଗର୍ଭସ୍ଥିତ ବାଡ଼ବାନଳର ପ୍ରସୂତିରୂପା ଘୋଟକୀ । ସମ୍ଭବତଃ ଜଳମଗ୍ନ ଆଗ୍ନେୟଗିରିମାଳା ।

(୨) କ୍ରୋଧ ରକ୍ତିମା ଜନ୍ମାଏ ଅଥଚ ସେଥି ସଙ୍ଗେ ବିରକ୍ତି ଜାତ କରେ । ଅଗ୍ନି ଜାଳି ଦିଏ ଅଥଚ ସେହି ଅଗ୍ନି ଦ୍ୱାରା ଆଲୋକ ନ ଜନ୍ମାଇ ତମ ଜାତ କରେ ।

(୩) ଧେନୁକା—ଗାଈ ।

କଥାକେ କଥାକେ ଥୋକେ ଯାଉଛନ୍ତି ଲୁଷି,
ଦ୍ରେଷ ବହ୍ନିଯୋଗେ ଯଥା, କଥାଟକ କଥାକେ (୧).
ବାଜିଆ ବାଡ଼େଇ ହୋଇ ମରନ୍ତି ପାମରେ ।
କ୍ରୋଧ ପଛେ 'ନୈଭ' ସଦା ପ୍ରସାରନ୍ତପାଣି
ଭିକ୍ଷାଲାଗି, କାକୁବାଣୀ କରନ୍ତେ ବଦନେ, (୨)
ସକଳ ଇନ୍ଦ୍ରିୟେ ସ୍ନେହ କଲେହେଁ ବସନ୍ତ,
ଶ୍ରଦ୍ଧା ସମଧିକ ତାର ରସନାନିବାସେ;
ଗୋଡ଼ାନ୍ତି ସଙ୍ଗତେ ଯାଚଞ୍ଚାପଛୁ ବହୁଦଳ,
ଅତ୍ୟାହାରେ ରୋଗୀ, ପୁଣି ରୋଗେ ଅତ୍ୟାହାରୀ !
ଭଜନାକୁ ଅହର୍ନିଶି ପ୍ରବୃତ୍ତ ଲାଳା,
ଗୋଡ଼ାନ୍ତି ଏ ଦଳ ସଙ୍ଗେ ଧନଲୋଭୀ ମୂଢ଼େ,
ଧନ ଯାଙ୍କ ପିତା ମାତା ଅଭୀଷ୍ଟଦେବତା,
ଅକାତର କନ୍ୟା, ଜବା ବନିତା, ଭଗିନୀ,
ଦେବାକୁ ଧନକେ ତୁଚ୍ଛ ଧନବନମଧ୍ୟେ !
ଏ ଦଳ କରନ୍ତି ବୃଦ୍ଧି ବୃଦ୍ଧ ବାର୍ଦ୍ଧୁଷିକେ
ଅଧମର୍ଣ୍ଣ-ମକ୍ଷିଙ୍କର ଊର୍ଣ୍ଣନାଭରୂପୀ,
କୁବେରଙ୍କ ବରପୁତ୍ରେ, ବଢ଼ାଇ ନରନ୍ତେ
(ମଦ୍ୟପର ତୃଷା ଯଥା ମହୁର୍ମୁହୁଃ ପାନେ)

(୧) ରସ—ବାରୁଦ ।

(୨) କାକୁ—ଦୈନ୍ୟୋକ୍ତି ।

ଧନବୃଦ୍ଧି ସଙ୍ଗେ ଯାଙ୍କ ଧନର ଲାଳସା,
ମହାରଙ୍କ, ମିଷ୍ଟବାକ୍ୟଦାନେ ମହାଦାତା । (୧)
ଭବଦୁଃଖହର-ମୋକ୍ଷପଥର ବିରୋଧୀ,
ଶୂନ୍ୟକୁ ଅକଟେ ଧର ନିବିଡ ଆଶ୍ଳେଷେ,
ଆସେ 'ମୋହ', ଶିଷ୍ୟବ୍ୟୂହ ଅସଂଖ୍ୟ ଗହଣେ,
କୁଟୁମ୍ବ-କମ୍ବାଳେ ମଗ୍ନ, କୁଣ୍ଠିତ ଯେ ସଦା (୨)
ଧର୍ମାନୁରଙ୍କାଳେ ସୁଦ୍ଧା ଈଶ୍ୱରସ୍ମରଣେ !
ଶାସ୍ତ୍ରଜ୍ଞାନସତ୍ତ୍ୱେ ଜଡ଼ ! ଅନ୍ଧ ଚକ୍ଷୁ ଥାଇ !
ହେଲେହେଁ ଜାଗ୍ରତ ଗାଢ଼ନିଦ୍ରା-ଅଭିଭୂତ !
ନିବସ୍ତ୍ରି ହୁଅନ୍ତି, ଅହା, ମହାଘୋରତମେ
ଧାପସତ୍ତ୍ୱେ, ମମତାର ଦୁଶ୍ଛେଦ୍ୟବନ୍ଧନେ !
ଆସେ 'ମଦ' ତୁଙ୍ଗଶିର ଲଗିଛି ଅକାଶେ
ମହାଅହମିକାମତ୍ତ, ହସ୍ତ ବକ୍ଷସ୍ଥଳେ, (୩)
ସଙ୍ଗେ ଉପାସକଦଳ ଗମ୍ଭୀରମୂରତି,
ଊର୍ଦ୍ଧ୍ୱଦୃଷ୍ଟି, ପଦଭରେ ଟଳେ ବସୁନ୍ଧରା,
ଆପଣାକୁ ବଡ ମଣି ସମସ୍ତେ କୁଣ୍ଠିତ
ମହାର୍ଘବଚନବ୍ୟସ୍ତେ ମାନହାନିଭୟେ,
ଅହମିକା-କୂପେ କୂପମଣ୍ଡୂକ ସରବେ,

(୧) କୃପଣମାନେ ଦ୍ରବ୍ୟ ଅତିରିକ୍ତ ମିଷ୍ଟଭାଷୀ ହୁଅନ୍ତି ।
(୨) କମ୍ବାଳ—ପଙ୍କ ।
(୩) ଅହମିକା—ମୁଁ ବଡ଼, ମୋହ ପରି ଆଉ କେହି ନାହିଁ ଏହି ଜ୍ଞାନ ।






ଧନମଦେ ମତ୍ତ କେହ୍ନୁ, କେହ୍ନୁ ଜନମଦେ,
ଭଜନର ମଦେ କେହ୍ନୁ, ପଦେ କେହ୍ନୁ ଅନ୍ଧା,
କେହ୍ନୁ ରୂପମଦେ, କେହ୍ନୁ ଆଭିଜାତ୍ୟମଦେ,
ବିଦ୍ୟାମଦେ, ବୁଦ୍ଧିମଦେ ସ୍ଫୀତ ହୋଇ କେହ୍ନୁ
ଜଗତ୍କୁ ଅତୁଳ ମଣି ଧରା ମଣେ ସରା !
ଅନ୍ୟଠାରେ ଅବନତ ହୋଇ ଅଛରେ କେ
ଅତିବିନମ୍ରର ଭାନ କରଇ କେ ପୁଣି, (୧)
ଅହଂକାରଶୂନ୍ୟ ବୋଲି ମନେ ଅହଙ୍କାରୀ ।
ମଦ ପଛେ ଆସେ 'ଈର୍ଷ୍ୟା' କୃଶକଳେବରା, (୨)
କରାଳକୁଟିଳଦୃଷ୍ଟି, ପାଣ୍ଡୁରବଦନା,
ହୃଦ୍‌ଗ୍ଳାନିରେ ଯାର ଯାଉଛି ଝାଉଁଳି
ଚଉଦଗେ ତରୁ ଲତା, ଯଥା ତପ୍ତବାତେ,
ରୋଗକ୍ଲିଷ୍ଟ ପ୍ରାୟେ ଦୁଷ୍ଟା ଅପ୍ରସନ୍ନା ସଦା,
ଶୁଷ୍କାସ୍ୟେ ଉପୁଜେ ହାସ୍ୟ ଯଦି କଦାଚତେ,
ସେ କେବଳ ପରଦୁଃଖେ; ଦୁଃଖେ କାହାରକି
କାନ୍ଦବାର ନ ଦେଖିଲେ ପକାଏ ସେ କାନ୍ଦ !
ସ୍ରବେ ରସନାରୁ ତାର ବିଷ ଅନର୍ଗଳ,

(୧) ଭାନ—ଛଳ ।

(୨) ପରର ସୌଭାଗ୍ୟ ଦେଖି ଈର୍ଷ୍ୟାନ୍ୱିତ ଲୋକଙ୍କର ଦେହ ଶୁଷ୍କ ହୋଇ ଯାଏ । 'ଈର୍ଷ୍ୟା' ଏମାନଙ୍କର ଅଭୀଷ୍ଟଦେବତା, ସୁତରାଂ 'କୃଶକଳେବରା' ।




ଏ ବଡ଼ ବିଷମବିଷ ! ଯାର ତୀବ୍ରତେଜେ
ଅଚେନ୍ୟ ଧାର, ତହିଁ ଦୁଷ୍ଟା ଆପେ ହୁଏ ଘାଇ !
ପରଦୋଷଦରଶନେ ଦିବ୍ୟଚକ୍ଷୁଷ୍ମାନ
ପରନିନ୍ଦାବାବଦୂକ, ମୂକ ପରଯଶେ,
ପରହାନିପ୍ରିୟ ଖଳ, କାନକୁହା ଅଟି
ଭଲୁଙ୍କର ମୁଖ ଦୁଃଖେ ଯାଉଅଛି ଶୁଖି
ପରଶ୍ରିର ମୁଖଶିରୀ ଦେଖି ପରଶ୍ରିରେ ;
ଘାଉ ହେଉଅଛି କେହି ଶୁଣି ଲୋକମୁଖେ
ପରଯଶକଥା ଯଥା ବୃଶ୍ଚିକଦଂଶନେ,
ପରସଉଭାଗ୍ୟେ କେହି ମହାଖେଦ ବହି
ଲଘୁ କରେ ହୃଦଭାର ଦୀର୍ଘଶ୍ୱାସ ତେଜି,
ମହାଘୋର ଈର୍ଷାନଳେ ଜଳି ନିରନ୍ତରେ,
ଜୀବନ୍ତେ ନରକଭୋଗ କରନ୍ତି ପିଶୁନେ ।
ଖଳା ପ୍ରାୟେ ରହି ରହି କହି ନାନାକଥା (୧)
ଆସୁଅଛି 'ମିଥ୍ୟା', ଯାର ବସ୍ତ୍ରଯାକ ଛାଳି,
ଛାଳପରେ ଛାଳ, ପୁଣି ଛାଳ ତା ଉପରେ,
ଏତେ ଛାଳସତ୍ତ୍ୱେ ଫୁଟି ଦିଶୁଛି ତା ଦେହ

(୧) ମିଥ୍ୟାବାଦିଲୋକେ ଅନର୍ଗଳ ସ୍ପଷ୍ଟବାକ୍ୟ କହି ପାରନ୍ତି ନାହିଁ । ଗୋଟିଏ ମିଥ୍ୟା ଘୋଡାଇବା ସକାଶ ଆଉ ଗୋଟିଏ ମିଥ୍ୟା କହନ୍ତି, ତାକୁ ଘୋଡାଇବା ପାଇଁ ପୁଣି ମିଥ୍ୟା କହନ୍ତି । ଏତେ କରି ସୁଦ୍ଧା ଧରା ପଡ଼ନ୍ତି ।

ପୁନଃପୁନଃ, ତେଣୁ ନୂଆ ନୂଆ ଡାଳମାନ
ଲଗାଉଛନ୍ତି ମହାବ୍ୟସ୍ତେ ସେ ଜୀର୍ଣ୍ଣବସନେ ;
ଆସନ୍ନ ପୁଞ୍ଜକଦଳ ଛନ୍ଦି ନାନାମତେ,
ପ୍ରବୀଣଷ୍ଟମୁଆପଣେ, ପାରଷଦପଣେ,
ପ୍ରଭୂର ଅଳୀକଯଶ ରଟନେ କେ ରତ
ହୃଷ୍ଟପୁଷ୍ଟ, ପ୍ରଭୁମନତୋଷଣକୌଶଳୀ,
କେହି କରୁଅଛନ୍ତି ନିଜବଂଶର ବଡ଼ିମା, (୧)
କେହି ବିଦ୍ୟା ସମ୍ପତ୍ତିର, ପ୍ରେତାଦିର କଥା
କହେ କେହୁ, ଦୂରଦେଶପର୍ଯ୍ୟଟକ କେହୁ
କହଇ, ସେ ଯାଇଥିଲା ମାନସସରୋବରେ,
ଦେଖିଲା ସେ ତହିଁ ଗଣ୍ଡଭେରୁଣ୍ଡ ବିହଙ୍ଗ,
ଊର୍ଦ୍ଧ୍ୱେ ତଳମାତ୍ର ସରଶ୍ଚାର-କଚପଲୁଁ
ଭିନଗୋଟା କରି ନେଇଗଲା ଚଞ୍ଚୁ ନଖେ;
କେହି କହେ କର୍ଣ୍ଣିକାର ମର୍କଟନଗରେ
ଶୁଣିଛି ସେ ନିଜକର୍ଣ୍ଣେ କର୍ଣ୍ଣରସାୟନ
ମର୍କଟସୁନ୍ଦରୀଙ୍କର ସଙ୍ଗୀତମାଧୁରୀ;
କେହି କହେ ବିଭୀଷଣପାଳିତ ସିଂହଳେ
ଦେଖିଆସିଛି ସେ ରକ୍ଷଃ ଅଦ୍ଭୁତମୂରତି,
ଚତୁର୍ମ୍ମୁଖ, ଅଷ୍ଟଭୁଜ, ଅଷ୍ଟପାଦ ଆଦି;
କେହି କହେ "କାଶ୍ମୀରେ ମୁ ଦେଖିଲି ମାନବ

(୧) ବଡ଼ିମା—ବଡ଼ପଣ ।

ଲମ୍ବକର୍ଣ୍ଣ, ଏକକର୍ଣ୍ଣ ଶେଷରୂପେ ପାଇ,
ଆନକର୍ଣ୍ଣେ ଯୋଡ଼ି ହୋଇ ଶୁଅନ୍ତି ସେ ଶେଯେ",
ଅବଶ୍ୱାସବ୍ୟଞ୍ଜି-ସ୍ମିତ ଶ୍ରୋତାମୁଖେ ଦେଖି,
ସଦର୍ପେ ପକାଇ ସ୍ୱଣ କହଇ ସେ ପୁଣି—
"ଅଜନ୍ମ ମୁ କହି ନାହିଁ ମିଥ୍ୟା କେଉଁ କାଳେ,
ମିଥ୍ୟାଠାରୁ ପାପ ଆଉ ନାହିଁ ତ୍ରିଜଗତେ"। (୧)
ସୁବସ୍ତ୍ରେ କୁତ୍ସିତବପୁ ଆବରି ଯତନେ,
ହାସ୍ୟେ ମିଷ୍ଟମୁଖ 'ଶାଠ୍ୟ' ଅସିର ଧାରରେ,
କକ୍ଷତଳେ ଖଣ୍ଡଗୁପ୍ତି ଗୁପତେ ପୁରାଇ,
ବିଷଦଗ୍ଧ,-ବାହ୍ୟେ ବଡ଼ ନିରୀହମୂରତି,
ମାତ୍ର ବଡ଼ ଦାଉଘାତୀ ଦୁର୍ମ୍ମତି ଅନ୍ତରେ;
ଆସୁଛନ୍ତି ଅନ୍ତେବାସୀ ଦୁରନ୍ତ ସରବେ, (୨)
କେହି ଚୌର୍ଯ୍ୟେ ରତ, କେହି କୃତ୍ରିମମୁଦ୍ରଣେ,
କୃତ୍ରିମଲେଖ୍ୟଲିଖନେ, ହିନ୍ଦେ କେହୁ ଅବା, (୩)
କେହି ବିଷଦାନେ, କେହୁ ଗୁପତମାରଣେ;
ଧର୍ମଭେକଧାରୀ କେହୁ, ଗୈରିକବସନେ,

(୧) "ମୁଁ ଜୀବନରେ କେବେ ମିଥ୍ୟା କହି ନାହିଁ" ଏହିପରି ଉକ୍ତି ମିଥ୍ୟା-ବାଦୀଙ୍କ ମୁଖରୁ ପ୍ରାୟ ଶୁଣାଯାଏ । ମିଥ୍ୟାବାଦୀ ସାମାନ୍ୟ କଥାରେ ଶପଥ କରେ ।

(୨) ଅନ୍ତେବାସୀ—ଶିଷ୍ୟ ।

(୩) କୃତ୍ରିମଲେଖ୍ୟ—ଜାଲଦସ୍ତାବିଜ ।

ଦୀର୍ଘଶ୍ମଶ୍ରୁ, ଦୀର୍ଘନଖ, ଦୀର୍ଘଜଟାଜୂଟେ
ମଣ୍ଡିତ, କାହାର ଅବା ଭସ୍ମେ ବୋଳା ତନୁ,
କେହି ଅବା ଜପମାଳା ଜପେ ଅବିରତେ;
ନାନା ଗୂଢ଼-ଆବରଣେ ଆବୃତ ସରବେ,
ଭେଦି ନ ପାରଇ ଯାହା ଚକ୍ଷୁ ସାରସ୍ୱତ । (୧)
କୃଷ୍ଣଶୁକ୍ଳବେନବର୍ଣ୍ଣି-ଛଦ୍ମବସ୍ତ୍ରଧାରୀ,
ବେନକରେ ବେନି କାଠି ବଜାଇ କୌତୁକେ
ଆସଇ 'କଳହ', ଯାର ଶିରୋରୁହ ଶିରେ
ପରସ୍ପର ଅସଂଲଗ୍ନ, କଣ୍ଟକ ଯେସନ,
ଲେଖ୍ୟ, ନିଦର୍ଶନ, ସାକ୍ଷ୍ୟ, ବ୍ୟବସ୍ଥା, ପ୍ରମାଣ,
ମୀମାଂସା, ବର୍ଣ୍ଣନାପତ୍ର, ଆଦି ଲିପି ଯେତେ,
ବିଡ଼ା ବିଡ଼ା କରି ଦୁଷ୍ଟ ଖୋସିଛି କଟୀରେ
ଅମୋଘ ଶୋଷଣ-ଅସ୍ତ୍ର ! ଯେ ଅସ୍ତ୍ର ପ୍ରୟୋଗେ
ଶୋଷିନିଏ ଧନଧନ, ଅନ୍ନ ଦରିଦ୍ରର
ଅଲକ୍ଷିତେ, ନାନାମତେ ଅନର୍ଥ ଭିଆଇ,
ସମଦଶାଭାଗୀ କରି ଅର୍ଥୀ ପ୍ରତ୍ୟର୍ଥୀଙ୍କ; (୨)
ସଙ୍ଗେ ସଙ୍ଗେ ଆସୁଛନ୍ତି ବ୍ୟବହାରାଜୀବ, (୩)

(୧) ଚକ୍ଷୁ ସାରସ୍ୱତ—ସରସ୍ୱତୀଙ୍କ ଚକ୍ଷୁ ।

(୨) ମୋକଦ୍ଦମାରେ ବାଦୀ ପ୍ରତିବାଦୀ ଉଭୟପକ୍ଷର ପ୍ରାୟ ସର୍ବନାଶ ହୁଏ ।

(୩) ବ୍ୟବହାରାଜୀବ—ଓକିଲ ।

କରଣ, ପାଞ୍ଜିଆ, ସାକ୍ଷୀ, ପଦାତିକ ଆଦି, (୧)
ଶିବାଗୃଧ୍ରରୂପୀ ଅଧିକରଣ-ମଶାଣେ । (୨)
ମୁହୁର୍ମୁହୁ ମାର ହାଇ, ଫୁଙ୍କ ଫୁଙ୍କାଇ
ଅର୍ଦ୍ଧନିମୀଳିତନେତ୍ରେ ଆସୁଅଛି ମଠେ
‘ଆଳସ୍ୟ’, କମଠଗତି, କୁତ୍ସିତମୂରତି,
ସେବକେ ମଳିନବେଶ, ଧୂଳିରେ ଧୂସର ;
କେ ଅଗ୍ରହୀ ପରଛିଦ୍ର ଅନ୍ୱେଷଣେ ସଦା,
ପରନିନ୍ଦା, ପରକୁତ୍ସା କଥନେ, ସର୍ବନେ
ରତ କେହି, ମତ୍ତ ହୋଇ କେହି ଗଲ୍ପାମୋଦେ
ଫୁତ୍କାରେ ଉଡ଼ାଏ କେତେ ରାଜା, ମହାରାଜା,
ସର୍ବଙ୍କ ପରାସ୍ତେ କେହି, ନ ଦେଖି ନ ଶୁଣି,
କହେ କେତେ ରଙ୍ଗେ କଥା ବାହାପିଆପଣେ,
କେହି ବା ଠାପୁଆପଣେ, ଧର୍ମ୍ମଧ୍ୱଜ ଯତ,
ପରଠାରୁ ସଦା ଅର୍ଥଶୋଷଣପ୍ରୟାସୀ
ଧର୍ମ୍ମନାମେ, ନିଜ ପେଟ ପୋଷଣ ସକାଶେ,
ଗୁଲୁଁ ଗୁଲୁଁ ମାର୍ଗେ ବହିପଡୁଅଛି କେହୁ,
ଦନ୍ତେ କେହୁ କାଟେ ତୃଣ, କେହୁ ମାଟିପରେ
ନଖେ ଲେଖେ ଏଣୁ ତେଣୁ ମନକୁ ଯା ଆସେ,
ପେଣ୍ଡ୍ରାବାଳ ଦୁଲୁଲାଇ ବସୁଅଛି କେହି,

(୧) କରଣ—ମୋହରିର ; ପାଞ୍ଜିଆ—ମହାଫେସ; ସାକ୍ଷୀ—ଗୁହା; ପଦାତିକ—ପେଦା ।
(୨) ଅଧିକରଣ—ବିଚାରାଳୟ । ଏହି ଉପମାରେ ଅର୍ଥୀ ପ୍ରତ୍ୟର୍ଥୀ ଶବସ୍ଥାନୀୟ ।






ପଛେ ବସି ଆନ କେହ୍ନୁ ମାରଇ ଉକୁଣି ।
ଏ ଆଦି ଅଛନ୍ତି ଯେତେ ମହାସେନାପତି
କଳର କଳ୍କିଷଦଳେ, ସମସ୍ତଙ୍କୁ ଘେନି
ପ୍ରଚଣ୍ଡବିକ୍ରମେ କଲ ଆକ୍ରମଣ ଆସି
ଭାରତର ଧର୍ମ୍ମପୁଞ୍ଜ, ଦୁର୍ଦ୍ଧର୍ଷପ୍ରତାପୀ;
ଚିଲିକାର ନୀଳବକ୍ଷେ ଶ୍ୱେତହଂସାବଳୀ
ଶରତେ ଯେକାଳେ ଥାନ୍ତି ରତ ସନ୍ତରଣେ,
କୁଞ୍ଚିତଚିଲିକାବଟପ୍ରାନ୍ତରେ ଅଟଳ-
କଟିଆଗଡଠାରୁ ଯେବେ ସହସା ସଞ୍ଚାଣ (୧)
ମହାଖରବେଗେ ଖସି ଆସେ ଅଧୋମୁଖେ
ବକ୍ରନଖ, ଅସ୍ତେ ବ୍ୟସ୍ତେ ପକ୍ଷିପନ୍ତି ଯଥା
ପଳାନ୍ତି ରୌଦ୍ରବେଗେ ଉଡି ଜୀବନବିକଳେ,
କିମ୍ବା ଯଥା କୋଣାର୍କର ଅନନ୍ତସୈକତେ (୨)
କେତକୀ-କୁନ୍ତଳକୁହୁଁ କୁଦି ମହାବଳ (୩)
ଆସିଲେ ତଳକୁ ଖସି, ପଳାନ୍ତି ତ୍ରସ୍ତେ
ଦ୍ରୁତପଦେ କୃଷ୍ଣସାର ସଙ୍ଗେ ମୃଗବଧୂ,
ସଦଳେ କଳଙ୍କ ଦେଖି, ଚକଲେ ତେସନ

(୧) କଟିଆ—ଚିଲିକାତୀରସ୍ଥ ପର୍ବତବିଶେଷ ।
(୨) କୋଣାର୍କ—ଅର୍କକ୍ଷେତ୍ର, ପୁରୀରୁ ୧୧କ୍ରୋଶ ଉତ୍ତରପୂର୍ବରେ ଅବସ୍ଥିତ । ଏ ଅଞ୍ଚଳର ସମୁଦ୍ରବେଳାରେ ସହସ୍ର ସହସ୍ର ହରିଣ ଦେଖାଯାନ୍ତି । ଏ ଅଞ୍ଚଳର କେତକୀବନ ବ୍ୟାଘ୍ରସଂକୁଳ ।
(୩) ମହାବଳ—ପଟାଧିଆ ବାଘ ।




ଅସ୍ତ୍ର ବ୍ୟସ୍ତ ଭାରତର ପୁଣ୍ୟପୁଞ୍ଜ ଯେତେ,
ସବୁ ଛାଡ଼ି ପଳାଇଣ ଲୁଚିଲେ କେ କାହିଁ;
ପୃଷ୍ଠରକ୍ଷୀ ଏକମାତ୍ର ଧର୍ମ ସହଚର
'ସାହସ' ପଛକୁ ରହି, କଳସୈନ୍ୟହାତେ
ହେଲା ବନ୍ଦୀ, ତହୁଁ କାମ କଳି-ଆଜ୍ଞାମତେ
କିଙ୍କରସ୍ୱରୂପେ ତାକୁ ନେଲା ନିଜବଳେ ।
ବଞ୍ଚିତ ପୌରବେ ଚାହିଁ ଅନଳ ବିଷାଦେ
କହିଲେ "ହେ ବୀର, ଏବେ, ଦେଖ, କି ଦୁର୍ଗତି
'ସାହସ'ର ହେଲା କଳଶାସନେ ଭାରତେ !
ଭାରତର ରକ୍ଷାପାଇଁ କ୍ଷତ୍ରିୟର ନେତା
ଥିଲା ଆଜିଯାଏ ଯେହ୍ନୁ, ଏବେ ସେହି ସିନା,
ଲମ୍ପଟର ସଖା ହେବ ଅଗମ୍ୟାଗମନେ,
ପ୍ରାଚୀର, ପରିଖା, ପୁର ଲଙ୍ଘି ଯିବାବେଳେ !" (୧)
ପଳାଇବାବେଳେ ଧର୍ମ ଯାଇଥିଲେ ଛାଡ଼ି
ଦିବ୍ୟପରିଚ୍ଛଦ 'ମୌନ' ନାମେ ଅଭିହିତ,
ସାଉଁଟି ସେ ପରିଚ୍ଛଦ 'ଶାଠ୍ୟ' ମହୋଲ୍ଲାସେ
ଅଗ୍ନିଦ, ଗରଦ, କୂଟଲେଖ୍ୟର ଲେଖକ, (୨)
ହତ୍ୟାକାରୀ, ସିନ୍ଧିଅଳ ଚୋରାଦିଙ୍କି ଡାକି

(୧) ଅର୍ଥାତ୍ ଭାରତବାସିମାନେ ଦେଶରକ୍ଷା ବିଷୟରେ ଭୀରୁ ହେବେ ଏବଂ କେବଳ ପାପକାର୍ଯ୍ୟରେ ସାହସୀ ହେବେ ।

(୨) ଗରଦ—ବିଷପ୍ରୟୋଗକାରୀ । କୂଟଲେଖ୍ୟ—ଜାଲଦସ୍ତାବିଜ ।






ନିଜଦଳୁଁ, ତାଙ୍କ ମୁଣ୍ଡେ ଦେଲା ଶାଢ଼ୀ ବାନ୍ଧି;
ଶାନ୍ତିରକ୍ଷକଙ୍କୁ ମାରି, ତାଙ୍କ ପରିଚ୍ଛଦେ
ନିଜ ବଳେ ସଜ୍ଜୀଭୂତ କରଇ ଯେସନେ
ଲୋକପ୍ରବଞ୍ଚନାପଟୁ ଦୁଷ୍ଟଦସ୍ୟୁପତି ।
ବିଷଣ୍ଣ-ଅନ୍ତରେ ତହୁଁ କୌନ୍ତେୟ ସୁମତି
କହିଲେ "ହେ ଦେବ, ବଡ଼ ବିଷମ ଏ କଥା !
ଅଚିନ୍ତ୍ୟ ଏ ଦୃଶ୍ୟ ମୋର ! ପବିତ୍ର ଭାରତେ,
ବ୍ରାହ୍ମଣର ମନ୍ତ୍ରବଳେ, କ୍ଷତ୍ରବୀର୍ଯ୍ୟବଳେ
ସୁରକ୍ଷିତ ଆର୍ଯ୍ୟଦେଶେ ପଶିବ ଅନୀତି
ଏତେ ସହଜ ? ଲାଗେ ବଡ଼ ଅସମ୍ଭବ ମୋତେ !"
ଶୁଣି ଦିବ୍ୟବାହୁଦେବ ନିଜ ଦିବ୍ୟତେଜ
ସମ୍ବରଣି, ଦରହାସ୍ୟେ କହିଲେ ପୌରବେ
"ବ୍ରାହ୍ମଣକ୍ଷତ୍ରିୟପରେ ଯଙ୍କ ଅଗ୍ରେ ସେନା
ପଶିବ କୌଶଳୀ କଳି, ବଲ୍ମୀକକୀଟରୂପେ
ପଶିଣ ଗୁପତେ ସେହି ଧର୍ମ୍ମ-ତରୁମୂଳେ,
ଅଲକ୍ଷିତେ କୋରି ମୂଳ, ଅନ୍ତଃସାର ହୀନ
କଲ୍ପଜୀବୀ ସେ ଦ୍ରୁମର, ଦୂରୁ ଡାକିଆଣି
ଯବନଙ୍କୁ, ତାଙ୍କ ହସ୍ତେ ଗଡ଼ାଇବ ଭୂମେ,
ଅସାଧ୍ୟ ସେ ବ୍ୟାଧି, ଯାହା ଭାରତର ଦେହେ
ପୋଟିବ, ଜାଣି ନ ଥିବେ ଧ୍ୟାନେ ଧନ୍ୱନ୍ତରି !" (୧)

୧) ଧନ୍ୱନ୍ତରି— ଆର୍ଯ୍ୟବୈଦ୍ୟକର ଆଦିପ୍ରଣେତା ।




ସୁଶ୍ରୁତର ଶୂଲ୍ୟ-ତନ୍ତ୍ର ହାଇବ ସେ ବ୍ରଣେ ! (୧)
ନୁହଇ ଉଚିତ ଆଉ ରହିବାର ଏବେ
ବହୁଦିନ ଏ ଭାରତେ, ତୀର୍ଥାଟନ-ବ୍ରତ
ଧାର, ହେ ଭାରତ, ବେଗେ ଯାଅ ହିମାଚଳେ; (୨)
ଧର୍ମ୍ମେ ଏକତାନମତି, ଧର୍ମ୍ମପକ୍ଷପାତୀ
ତୁମ୍ଭେ, ବୀର, ଅନାର୍ଯ୍ୟର ଦମନେ ଅକ୍ଷମ
ହୋଇ, ଦହି ହେବ କିନା ଆପେ ଅନୁତାପେ,
ବନ୍ଦୀ ପତି ଯେହ୍ନେ ପତ୍ନୀଲାଞ୍ଛନାଦର୍ଶନେ;
ଅସ୍ପୃଷ୍ଟ ପାପର ବନ୍ୟା, ଭାରତଭରସା
ପାପ-ଜଳେ ଦ୍ୱୀପରୂପୀ ମହତ ଯେ ଜନ
ବୁଡ଼ିଯିବ ସିନା, ଅହା, ଏ ଘୋରପ୍ଲାବନେ,
ତୁମ୍ଭ ପରି ସୁଚନ୍ଦନଦ୍ରୁମ ପାଇଁ ଆଉ
ନ ଥିବଟି ଠାବ ଏହି ବିଷବଲ୍ଲିବନେ;
ଧର୍ମ୍ମ-ଅନୁଷ୍ଠାନବ୍ରତେ ସହାୟ ବିହୁନେ
ସାଧୁର ଜୀବନ ହେବ ମହାବିଡ଼ମ୍ବନା,
ମହାଅନର୍ଥର ହେତୁ ହେବ କାଳବଶେ
ଧୈର୍ଯ୍ୟ, ବୀର୍ଯ୍ୟ, ପ୍ରତିଭାଦି ମହତ୍ତ୍ୱ ଯାଙ୍କର
ପୁରୁଷର, କାପୁରୁଷ-ପ୍ଲାବିତ ଭାରତେ;

(୧) ସୁଶ୍ରୁତ—ଚିକିତ୍ସାଶାସ୍ତ୍ରପ୍ରଣେତା ଋଷି । ଶୂଲ୍ୟତନ୍ତ୍ର (surgery)ର ଆଦ୍ୟପ୍ରଣେତା ।

(୨) ଭରତ—ଭରତବଂଶୋଦ୍ଭବ, ଯୁଧିଷ୍ଠିରଙ୍କ ସମ୍ବୋଧନ ।

କଳଣିଷ୍ଣ କୁକ୍ଷିମ୍ଭରି-ହ୍ୱାର୍ଜାତି-ଦୁଷ୍କୃତି-(୧)
ଯୋଗେ ନାରଖାର ହେବ ଅଚିରେ ଏ ମହୀ;
ସେହି ଦେଶ, ସେହି ଗିରି, ସେହି ନଦନଦୀ,
ନଗର, ନଗରୀ, ତୀର୍ଥ, ଆଶ୍ରମାଦି କରି,
ସର୍ବେ ଥିବେ ପୂର୍ବପରି, ମାନବେ କେବଳ
ନାମକୁ ମାନବ ରହି, ପଶୁଠାରୁ ହୀନ
ହୋଇଯିବେ ଯୁଗଧର୍ମ୍ମେ ଭାରତମଣ୍ଡଳେ ।"

(୧) କୁକ୍ଷିମ୍ଭରି—ସ୍ୱୋଦର ପୋଷଣରେ ବ୍ୟସ୍ତ ।








## ପଞ୍ଚମ ସର୍ଗ ।

ଆଶାସ୍ପୀ-ଉତ୍କଳଆଶା-କିଶୋରପାଦପ, (୧)
ଗୁଣାରାମ, ରାମଚନ୍ଦ୍ର ଭଞ୍ଜକଞ୍ଜରବ, (୨)
ଭଞ୍ଜକୁଳଧ୍ୱଜ କୃଷ୍ଣଚନ୍ଦ୍ର ଜ୍ୟେଷ୍ଠାତ୍ମଜ,
ଶୁଣିଲି ମୁ ବହୁମୁଖୀ-ଜନଶ୍ରୁତି-ମୁଖେ
ନବରେ ତୁମ୍ଭର ଜଳ ପଶନ୍ତେ ପ୍ରଥମେ,
ଅବିରତ ଦାନବାରିପିଚ୍ଛିଳପ୍ରାଙ୍ଗଣେ (୩)
ସେ ନବରେ, ଗଲୁଁ ଗଲୁଁ ଅତି ସାବଧାନେ
ଖସିଲ ତା ଗୋଡ଼, ଦୁଷ୍ଟ ପଡ଼ିଲା କଚାଡ଼ି
ଉତ୍ତାନେ, ବାହୁଡ଼ି ତେଣୁ ଗଲା ଅପମାନେ;
ସତ୍ୟ କି ହେ ଏ କାହାଣୀ ? ମିଥ୍ୟା ବୋଲି ଅବା
କେମନ୍ତେ ବୋଲିବି ? ଯେଣୁ ଦେଖୁଛୁଁ ନୟନେ
ପଶି ନାହିଁ ଦୁଷ୍ଟ ତୁମ୍ଭ ହୃଦୟ-କୁସୁମେ
କୀଟରୂପେ, କୂଟନୀତିପ୍ରୟୋଗଅଗ୍ରଣୀ; (୪)

---

(୧) ଆଶାସ୍ପୀ—ଆଶାଯୁକ୍ତ ।
(୨) ରାମଚନ୍ଦ୍ର—ମୟୂରଭଞ୍ଜାଧିପତି ମହାରାଜ ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ ।
(୩) ଦାନ ଦେବା ସମୟରେ ଯେଉଁ ଜଳ ନେବାକୁ ହୁଏ ତଦ୍ଦ୍ୱାରା ପିଚ୍ଛିଳ ।
ବ୍ରାହ୍ମଣମାନଙ୍କ ପ୍ରତି ମୟୂରଭଞ୍ଜ ରାଜବଂଶର ବଦାନ୍ୟତା ଉଲ୍ଲପ୍ରଦିବ ।
(୪) କୂଟନୀତିପ୍ରୟୋଗଅଗ୍ରଣୀ—ଦୁଷ୍କଳର ବିଶେଷଣ ।









'ମଦନ' 'ଆଳସ୍ୟ' ନାମେ ବେନି ସେନାପତି
ଛନ୍ତି ଯେହ୍ନୁ କନ୍ଦର୍ପସୈନ୍ୟେ, ବଳ ପଡ଼ି ଯେହ୍ନେ
ଜିଣିବାକୁ ରାଜକୂଳ; ଜିଣି ଅବହେଳେ
ଅଳ୍ପକାଳେ ଶତ ଶତ ଭୂପ ଭୂଭାରତେ,
କଳଗ୍ରହସ୍ତମ୍ଭତଳେ ବନ୍ଧାଇଲେ ଶାନ୍ତୀ;
ତରୁଣ ଯୌବନ, ପୁଣି ରୂପ ଅପ୍ରତିମ,
ଗର୍ଭେଶ୍ୱରପଣ ଦେଖି ତୁମ୍ଭର; ଏ ବେନି (୧)
ପାଞ୍ଚିଥିଲେ, ଗୁପ୍ତେ ଏହି ତିନିମାର୍ଗେ ପଶି, (୨)
ତୁମ୍ଭ ହୃଦ-ଦୁର୍ଗଚୂଳେ ପୋତିବେ ପତାକା,
ମାତ୍ର ସଶସ୍ତ୍ରେ ଦେଖି ବିବେକ-ପ୍ରହରୀ
ପ୍ରତିମାର୍ଗେ, ବ୍ୟଗ୍ରେ ତ୍ୱରେ ପଳାଇଲେ ଦୂରେ;
'କ୍ରୋଧ'ଙ୍କ ଦୁର୍ଦ୍ଧର୍ଷସ୍ୱରୂପ, ଜଗେ ମୃତ୍ୟୁଞ୍ଜୟ
କାମେ ଜିଣିବାକୁ ଯାଇ ହାରିଲେ ଯା ପାଶେ,
ନିରଙ୍କୁଶପ୍ରଭୁପଣସତ୍ତ୍ୱେ ସେ ତୁମ୍ଭର
ଆଣି ନ ପାରିଲା ଟିକେ ନେତ୍ରେ ଅରୁଣିମା, (୩)
ସ୍ୱଦୋଷଦର୍ଶିତାରୂପ ପ୍ରଚ୍ଛନ୍ନକଞ୍ଚୁକେ
ଆବୃତ ତୁମ୍ଭର ହୃଦ, ନ ଜାଣେ ଏ କଥା, (୪)

(୧) ଗର୍ଭେଶ୍ୱର—ଗର୍ଭରୁ ଅର୍ଥାତ୍ ଜନ୍ମରୁ ରାଜା ।
(୨) ଯୌବନ, ରୂପ, ଏବଂ ଗର୍ଭେଶ୍ୱରତ୍ୱ ପାପର ଏ ତିନୋଟି ପ୍ରଶସ୍ତ ମାର୍ଗ ।
(୩) ତରୁଣବୟସ୍କ ମହାରାଜ ଶ୍ରୀ ରାମଚନ୍ଦ୍ରଙ୍କୁ କ୍ରୋଧାଧୀନ ହେବାର ପ୍ରାୟ ଦେଖା ଯାଇ ନାହିଁ ।
(୪) ସ୍ୱଦୋଷଦର୍ଶୀ ଲୋକେ ଅନ୍ୟ ଉପରେ ପ୍ରାୟ କ୍ରୋଧ କରନ୍ତି ନାହିଁ । ବାଲ୍ମୀକି ରାମଚନ୍ଦ୍ରଙ୍କୁ "ସ୍ୱଦୋଷଦର୍ଶୀ" ଏହି ବିଶେଷଣ ଦେଇଅଛନ୍ତି ।




ନିଜତୂଣ ଶୂନ୍ୟ ସିନା କଲା ସେ ବିଫଳେ; (୧)
ଖଳ କାନକୁହା ଆଦି ଈର୍ଷ୍ୟା-ଉପାସକେ
ପୂର୍ଣ୍ଣ ସଦା ରାଜସଭା, 'ଈର୍ଷ୍ୟା' ଏହା ଜାଣି
ଠାକି ରହିଥିଲା ତୁମ୍ଭ ହୃଦେ ପଶିବାକୁ
ତାଙ୍କ ଯୋଗେ, ବୃଥା ହେଲା ଈର୍ଷ୍ୟାର ସେ ଆଶା,
ଯେଣୁ ତୁମ୍ଭେ ଏକ କର୍ଣ୍ଣେ କାନକୁହା ବାଣୀ
ଶୁଣି, ଅନ୍ୟ କର୍ଣ୍ଣ ମୁକ୍ତ ରଖିଲ ଗୂଢ଼େତ
ଶୁଣିବାକୁ ଅଭିଯୁକ୍ତକଥା ଯଥାକାଳେ;
ଅଉ ଯେତେ ଥିଲେ ରାଜମୁଖ୍ୟସେନାପତି,
'କାମ' 'କ୍ରୋଧ' ଆଦିଙ୍କର ଦେଖି ଏ ଦୁର୍ଦ୍ଦଶା,
ମୁଣ୍ଡେ କର ଦେଇ ସର୍ବେ ବସିଛନ୍ତି ଦୂରେ
ନିରାଶେ, ତୁଟିଛି ମନୁ ଦାରୁଣଜିଗୀଷା;
ମାତ୍ର ଏ ଦୁରନ୍ତଦଳେ ତିଳେ ନାହିଁ ପ୍ରତେ,
ବିଶ୍ୱାସଘାତକ ଏହି, ଛିଦ୍ର ଖୋଜିବାର
ନିତ୍ୟବ୍ରତ ଏହାଙ୍କର ରାଜସ୍ୱତ୍ୱପଣେ;
ରହିବା ଉଚିତ ତେଣୁ ଜାଗରୂକ ହୋଇ
ତୁମ୍ଭର, ହେ ବୀର, ଏହି ତରୁଣଯୌବନେ,
ଗୌରବ କରନ୍ତେ ପ୍ରଜାପୁଞ୍ଜ-ରଣଧୀର
ମୁଣ୍ଡାଇଛ ମୁଣ୍ଡେ ରାଜମୁକୁଟର ବ୍ୟାଜେ,
ଗୌରବ କରନ୍ତି ତୁମ୍ଭ ଜନ୍ମ ଭବତଳେ

(୧) ତାହାର ସମସ୍ତ ଶର ବିଫଳ ହେଲା ।

ନୁହଇ, ହେ କ୍ଷଣଜନ୍ମା, ଏକା ତୁମ୍ଭପାଇଁ,
ତାରକାଦଳର ଜ୍ୟୋତି ତାଙ୍କ ପାଇଁ ହିନା,
ମାତ୍ର କି ଚନ୍ଦ୍ରର ପ୍ରଭା ଏକା ଚନ୍ଦ୍ରପାଇଁ ?
ଉତ୍କଳର ଆଶା-ନଭେ ତୁମ୍ଭେ ଶୁଭକ୍ଷଣେ,
ହେ ରାଜେନ୍ଦ୍ର, ଉଦିଛନ୍ତି ଦ୍ୱିଜରାଜରୂପେ, (୧)
"ରଜା ରାଜ୍ୟାଶ୍ରମ-ଋଷି" କବିର ଏ ବାଣୀ (୨)
ଫଳି ଅଛୁଅଛି ତୁମ୍ଭ ପବିତ୍ରଜୀବନେ;
ଶୌର୍ଯ୍ୟେ, କର୍ମ୍ମେ, ବେଶ ଧର୍ମେ ସୁଲକ୍ଷଣଯୁତ
ତୁମ୍ଭ ପରି ପୁତ୍ର ପାଇ ପୁତ୍ରବତୀ ଆଜି
ଚିରଅଭାଗିନୀ ଏହି ଉତ୍କଳଜନନୀ;
ହୀରା-ନୀଳା ଆଦି ଗ୍ରାମ୍ୟଆଭରଣଭାରେ
ଭାରାକ୍ରାନ୍ତ ଭୂପଦଲେ ନାରଚେ ଦୁର୍ଲ୍ଲଭ
ବିଦ୍ୟା ଦୟା ବିନୟାଦି ଅଗ୍ରାମ୍ୟଭୂଷଣେ
ଭୂଷିତ ତୁମ୍ଭଙ୍କୁ, ଭଞ୍ଜରାଜଲକ୍ଷ୍ମୀ ସହ,
ଦେଖଇ ଉତ୍କଳ, ଆହା, ଯେସନେ ନିଶୀଥିନୀ (୩)
ଧ୍ରୁବଙ୍କୁ ଦେଖନ୍ତି କୋଟିତାରା-ନେତ୍ର ଫେଡ଼ି,
କିମ୍ବା ଯଥା ଦେବଦଳ ଜଳଧିମନ୍ଥନେ
ହେରିଲେ ହରଷେ ଦିବ୍ୟ ଜ୍ୟୋତିପୁଞ୍ଜଧାରୀ

(୧) ଦ୍ୱିଜରାଜ—ଚନ୍ଦ୍ରମା ।
(୨) କାଳିଦାସଙ୍କର ଉକ୍ତି । ରାଜ୍ୟରୂପ ଆଶ୍ରମର ରଜା ଋଷି ଅଟନ୍ତି । ବିଳାସିତା ରାଜଧର୍ମ୍ମ ନୁହେ ।
(୩) ନିଶୀଥିନୀ—ରଜନୀ ।






ସିନ୍ଧୁବାରିସମ୍ମଥିତ ପାରିଜାତତରୁ,
ସଙ୍ଗେ ବିଶ୍ୱବନ୍ଦ୍ୟା ଦେବୀ ଇନ୍ଦିରାସୁନ୍ଦରୀ
ଜ୍ୟୋତିର୍ମ୍ମୟୀ, ଜ୍ୟୋତିର୍ମ୍ମୟକମଳବାସିନୀ;
କଳ୍ପତରୁ ଲଭି ଯଥା ତ୍ରିଦିବବଧୂଗତି
ଦୁଃଖଗଲା, ଦୁଃଖଯାଉ ଉତ୍କଳମାତାର,
ଭଞ୍ଜରବି, ତୁମ୍ଭ ଯୋଗେ ଦୁର୍ଯ୍ୟୋଗ-ଜଳଦା;
ଚିରନିସ୍ପନ୍ଦ ମୁହିଁ ଦାରୁଣବିପାକେ,
ଝୁରୁଅଛି ନୈରାଶ୍ୟର ଅତଳ କୁହରେ,
ତଥାପି, ଯଶସ୍ୱି, ତୁମ୍ଭ ସୁଯଶସୌରଭେ
ଉତ୍କଣ୍ଠ ମୋର ଅଜ୍ଞ ମୁଖର ସଙ୍ଗୀତେ,
ପଲ୍ଲବ ମୁକୁଳ ଫୁଲ ମୃଦୁଳେ ଦୋଳାଇ,
କୁଞ୍ଚାଇ ତରଙ୍ଗମାଳେ ତଟିନୀର ବେଣୀ,
ମୁଖରି ନିକୁଞ୍ଜବନେ ବନପ୍ରିୟକୁଳେ,
ସୁରୁ ସୁରୁ ସ୍ୱନେ ଯେବେ କେଦାରେ, କାନ୍ତାରେ
ପ୍ରସରେ ମଳୟସ୍ରୋତ ପରିମଳସଖା,
ଉଲ୍ଲାସେ ଦୁଃଖର କ୍ଷଣବିସ୍ମୃତି ଲଭି
ପଞ୍ଜରବିହଙ୍ଗ ଯଥା ସ୍ତବେ କ୍ଷଣେ କ୍ଷଣେ;
ତୁମ୍ଭର ଆଦେଶେ, ବୀର, ଏ ମହାଗୀତିକା
ଗାଇବା ଆଶାୟେ ଏବେ ଧରିଛି ମୁଁ କରେ
ଚିରମୂକ ବୀଣା ମୋର ସିକ୍ତ ନେତ୍ରଜଳେ,
ଅସ୍ପଷ୍ଟ ଏ ଗୀତ ଆସୁ ଦିବ୍ୟ ଅବଧାନେ ।




ଗୃହସ୍ଥ ସଞ୍ଚୟପାତ୍ରୁ ଯତନେ ସମ୍ପାଦି
ସମ୍ପତ୍ତିକି, ମୂଳ କର ରଖି ଅଟ୍ଟୁଘରେ,
ନିଶ୍ଚିନ୍ତ ରହଇ, ଅଗ୍ନିଭୟୁଁ ମନେ ମନେ,
ଦୈବେ ଯେବେ ଦେଖେ ବହ୍ନି ଅଟ୍ଟୁମଣ୍ଡଳେ
ଗୃହପତି, କାତର ସେ ହୁଅଇ ଯେସନେ,
ବିପ୍ର, କ୍ଷତ୍ରିୟର ଭାବୀ ଅବନତି ଶୁଣି,
କାତର ତେସନ ହେଲେ କୌନ୍ତେୟ ସୁମତି, (୧)
ସାଶ୍ରୁନେତ୍ରେ କରଯୋଡ଼ି ବୈଶ୍ୱାନରପଦେ
ପଡ଼ିଣ କହିଲେ, "ପ୍ରଭୁ, ତ୍ରିକାଳଦରଶୀ
ତୁମ୍ଭେ ଯେଣୁ, କହ ମୋତେ କିରୂପେ ଭାରତେ
ଘଟିବ ଏ ମହାନର୍ଥ, ସୁଜଳା ସୁଫଳା
ଏ ଶସ୍ୟଶ୍ୟାମଳା ଧରା ପରହାତେ ଦେଇ,
ପରପଦାନତ କି ହେ ହେବେ ଆର୍ଯ୍ୟସୁତେ ?
ଏ ମର୍ତ୍ତ୍ୟ-ନନ୍ଦନ, ଦେବ, ହେବ କି ହେ ସତେ
ଭୀଷଣ ଦାନବଙ୍କର ବିହାରଅଗଣା ?
ଆର୍ଯ୍ୟସ୍ୱାଧୀନତା-ରବି ଅସ୍ତମିତ ହୋଇ
ଭାରତ କି ପରିଣତ ହେବ ଅବଶେଷେ,
ଉଚ୍ଛୃଙ୍ଖଳ-ଆର୍ଯ୍ୟଙ୍କର ଗୌରବ-ଶ୍ମଶାନେ ?
ଉତ୍ତରିଲେ ଅଗ୍ନି "ବୀର, ଘଟିବ ନକର
କହିଲ ଯା, କେବେ ତାହା ନୋହିବ ଅନ୍ୟଥା,

(୧) କୌନ୍ତେୟ—କୁନ୍ତୀପୁତ୍ର ଯୁଧିଷ୍ଠିର ।






ସ୍ୱାଧୀନତା ବୋଲି ଯାହା ବୋଇଲ ଆପଣେ,
ସେ କେବଳ ଷଡ଼ରିପୁପ୍ରଭୁତାରଛାୟା, (୧)
ସେ ପ୍ରଭୁତା ଚାଲିଗଲେ କାଳର କୌଶଳେ,
ତେବେ ଯିବ ସ୍ୱାଧୀନତା, ପିଣ୍ଡ ସଙ୍ଗେ ଯଥା
ଚାଲିଯାଏ, ପାଣ୍ଡୁନାଥ, ସେ ପିଣ୍ଡର ଛାୟା;
ରିପୁଅଧୀନତା ସଙ୍ଗେ ପରଅଧୀନତା
ଆସିବ ସ୍ୱଭାବେ, ଯୋଗେ ଉପସର୍ଗ ପରି,
ସାରସ୍ୱତ ବ୍ରାହ୍ମଣର ବାଣୀ-ଆରାଧନା (୨)
ଚିରବ୍ରତ, ଏବେ ସେହି ଦେବୀ ତିରୋଭାବେ,
ବ୍ରହ୍ମଚର୍ଯ୍ୟ ତେଜି ବିପ୍ରେ ହେବେ କଳିଯୁଗେ
ଲୋଭମୋହ-ଜାଲେ ପଡ଼ି, ଅବିଦ୍ୟାସେବକ,
ଚନ୍ଦ୍ରିକାପୀୟୂଷପାୟୀ ଚକୋରଔରସେ
ଜନ୍ମିବେ ଉଲୂକ ଅମାତିମିରପ୍ରଣୟୀ,
ଷଟ୍‌କର୍ମ୍ମଣ୍ୟ ଦ୍ୱିଜାତିର ହେବ ଅବଶେଷ
ଷଷ୍ଠକର୍ମ୍ମେ ଶିଷ୍ଟକର୍ମ୍ମ ଏକମାତ୍ର ବ୍ରତ, (୩)
ତପ, ଦମ, ଜପ୍ୟମାଦି ସବୁ ଦୂରେ ଯାଇ

(୧) ଷଡ଼ରିପୁପ୍ରଭୁତା—ଛଅରିପୁ ଉପରେ ପ୍ରଭୁତ୍ୱ । ଅର୍ଥାତ୍ ପ୍ରକୃତ ସଂଯମୀ ନ ହେଲେ ଲୋକେ ସ୍ୱାଧୀନପଦବାଚ୍ୟ ହୁଅନ୍ତି ନାହିଁ ।

(୨) ସାରସ୍ୱତ—ସରସ୍ୱତୀଭକ୍ତ ।

(୩) ଷଟ୍‌କର୍ମ୍ମ—ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ । ସବୁ ଯାଇ କେବଳ ଶେଷକର୍ମ୍ମ ଅର୍ଥାତ୍ ପ୍ରତିଗ୍ରହ ରହିବ; ଅର୍ଥାତ୍ ବ୍ରାହ୍ମଣମାନେ ଭିକ୍ଷୋପଜୀବୀ ହେବେ ।




ଏକମାତ୍ର ଯଜ୍ଞସୂତ୍ର ଗୁଣ ଥିବ ଗୁଣେ ; ୧
ଧର୍ମକୁ କରିବେ ମୃତ ଜୀବନଜୀବନ୍ତା,
ମୂର୍ଖପଣେ ଏହି ଜାତି ଏ ମର୍ତ୍ତ୍ୟମଣ୍ଡଳେ
( କୂପକୁ ସେ କୂପବାସିମଣ୍ଡୂକ ଯେସନ )
ଏକମାତ୍ର ଦେଶ ଏହି ଭାରତକୁ ମଣି,
ଭାରତବାସିଙ୍କି ଦୃଢ଼କର୍ମକାଣ୍ଡଜାଲେ
ରୁନ୍ଧିବେ, ସେ ଜାଲେ ପୁଣି ନିଜେ ହେବେ ରୁନ୍ଧ,
ସେ ଜଟିଳକର୍ମକାଣ୍ଡେ ହୋଇ ବନ୍ଦୀଭୂତ,
ଧର୍ମର ଯେ ସାର, ତାକୁ ଛାଡ଼ି ଆର୍ଯ୍ୟସୁତେ
ଯାପିବେ ଜୀବନ ଧର୍ମ-ତୁଷେ ତୁଷ୍ଟ ହୋଇ, ୨
ଅକ୍ଷୁଣ୍ଣ ରଖିବାଲାଗି ସ୍ୱଜାତି ପ୍ରଭୁତା,
ଯଜମାନଜାତିଙ୍କର ଐକ୍ୟ ଭଙ୍ଗ ଦେଇ
ଶତ ଶତ ଉପଜାତି ସୃଜିବେ ବ୍ରାହ୍ମଣେ,
ଭେଦବୁଦ୍ଧି ଉପୁଜାଇ ମାନବେ ମାନବେ;
ସମାଜେ ଏ ହୀନଭାବ ଘୁଣରୂପେ ପଶି
ଅସ୍ଥି ମଜ୍ଜା ଶୋଷି, ତାକୁ କରିବ ଜର୍ଜ୍ଜର,
ଏକ ଅପରଙ୍କର ସ୍ପର୍ଶେ ମଣିବ ଅଶୁଚି

---

୧ । ପ୍ରଥମ ଗୁଣ ଶବ୍ଦର ଅର୍ଥ ରଜ୍ଜୁ । ଦ୍ୱିତୀୟ ଗୁଣ ଶବ୍ଦର ଅର୍ଥ ଧର୍ମ ।
୨ । ବାହ୍ୟ ଅନୁଷ୍ଠାନାଦି ଧର୍ମର ଅସାର ଅଂଶ ।

ଅପଣାଙ୍କୁ, ଅପବିତ୍ର ପଶୁଠାରୁ ପୁଣି
ହୀନ କରି ମାନବଙ୍କୁ ମଣିବେ ମାନବେ,
କ୍ରମେ ଗୃହବିଗ୍ରହର ସୂତ୍ରପାତ ହୋଇ
ଏହିରୂପେ ଛିନ୍ନଭିନ୍ନ ହେଲେ ଆର୍ଯ୍ୟଜାତି,
ବଶ୍ୱପୂଜ୍ୟ ଆର୍ଯ୍ୟଙ୍କର ଏହି ପୁଣ୍ୟବତୀ
ଭୂମି ହେବ ଛିଦ୍ରାନ୍ୱେଷିଶତ୍ରୁର ଆମିଷ; ୧
ବ୍ରାହ୍ମଣର ତପଃଫଳେ ହୋଇଥିଲା ଯେହୁ
ସୁରଙ୍କର ଲୀଳାକ୍ଷେତ୍ର, ସେ ଭାରତ ଏବେ
ହେବ ପରଣତ ସେହି ବ୍ରାହ୍ମଣର ପାପେ
ଅଜ୍ଞାନଅନ୍ଧାରମୟ ଭୀଷଣ ଶ୍ମଶାନେ ।
'ମଦନ', 'ଆଳସ୍ୟ', 'ଈର୍ଷ୍ୟା', ତିନି ସେନାପତି
ପଶିବେ ରାଜନ୍ୟଗୃହେ କଳି ଆଜ୍ଞାମତେ,
ଆମନ୍ତ୍ରସାଧନ ସେହି ଦୃଢ଼ପ୍ରତିଜ୍ଞତା,
ଯେ ସାହସ ତୃଣ-ପ୍ରାଣ ଦେଶରକ୍ଷାବ୍ରତେ, ୨
ସେ ପ୍ରଭାବ ଦୀପ୍ତିମନ୍ତ ଯେତେ ମୋର ଶିକ୍ଷା,
ବଜ୍ରସାର ସେହି ବୀର୍ଯ୍ୟ, ଥିଲା ଅଜିଯାଏ
ଜାତିର ଯା ପ୍ରିୟଧର୍ମ, ସବୁ ଯିବ ଚାଲି,

୧ । ଆମିଷ—ଶିକାର ।

୨ । ଯେ ସାହସ ଦେଶରକ୍ଷା ସକାଶ ନିଜର ପ୍ରାଣକୁ ତୃଣବତ୍ ମଣେ ।

ସବୁ ଯାଇ ଅଭିମାନ ରହିବ କେବଳ,
ସରସେ କର୍ଦ୍ଦମ ଯଥା ରହେ ଅବଶେଷେ
କମଳ କୁମୁଦ ସଙ୍ଗେ ଜଳ ଗଲେ ଶୁଖି;
ଜୀବନ୍ତଭାରତଦୁର୍ଗରୂପୀ ଏହି ଜାତି ୧
ବୀର୍ଯ୍ୟହୀନ ଅକର୍ମଣ୍ୟ ହେବେ ଅଳ୍ପଦିନେ,
ଅଳ୍ପଦିନେ ଦ୍ରୋଣାଚାର୍ଯ୍ୟଶିଷ୍ୟବଂଶଧରେ
ଆଚରିବେ ଯୁଦ୍ଧବିଧି କେବଳ ଗଳପେ,
ଧନୁ, ଗଜାଙ୍କୁଶ, ଅସି, ଗଦା ଆସ୍ଫାଳନେ
କର୍କଶ ଯାଙ୍କର ହସ୍ତ, ତାଙ୍କର ସନ୍ତତି
ଭୀରୁ ପ୍ରାଣରଙ୍କ, ଅହା, ହୋଇ କାଳବଶେ ୨
ହସ୍ତୀ ଦେଖି ଦଶହାତ, ଅଶ୍ୱ ଦେଖି ଶତ·
ହସ୍ତ ଦୂରେ ଯାଇ ଉଭା ହେବେ ମହାତ୍ରାସେ,
ନଜ ସନ୍ତତିଙ୍କି ପୁଣି, ଆଚାର୍ଯ୍ୟ ଅଣାଇ
ଶ୍ଲୋକରୂପେ ଶିଖାଇବେ ଏହି ଭୀରୁନୀତି,
ଏ ମହାପ୍ରତାପୀ ଜାତି ହୀନୁ ହୀନତର
ହୋଇଯିବେ ଦିନେ ଦିନେ ବଳ ଉତ୍ପୀଡ଼ନେ,
ପୂର୍ବତେଜୁଁ ଅବଶିଷ୍ଟ ଥିବ ଯାହା କିଛି,

୧। କ୍ଷତ୍ରମାନେ ଭାରତବର୍ଷର ଜୀବନ୍ତଦୁର୍ଗ ପରି ଥିଲେ।

୨। ପ୍ରାଣରଙ୍କ—ପ୍ରାଣରକ୍ଷା ନିମନ୍ତେ ଆତୁର।

ନ ଆଇବ କେହି ଯେତେ ଯୁଦ୍ଧ ସଙ୍କଟରେ
'ଈର୍ଷ୍ୟା' ଅସ୍ତ୍ର, ରତ ହୋଇ ସେ ବୃଥା ବଗ୍ରହେ,
ବହିଃଶତ୍ରୁଆକ୍ରମଣଭୟ-ପ୍ରତିକାରହେତୁ
ଭାବିବାକୁ ନ ଥିବଟି ଅବସର ତିଳେ,
ଉପରେ ଉଡ୍ଡୀୟମାନ ଯବନ-ଗରୁଡ଼େ
ଦେଖି ହେବା, ଯୁଝୁଥିବେ ଗଜକୂର୍ମ ପରି,
ଭାବି-ଅନ୍ଧ ବର୍ତ୍ତମାନସର୍ବସ୍ୱ ବଙ୍ଗରେ, ୧
ସର୍ବେ ଆତ୍ମତନ୍ତ୍ରରତ, ସର୍ବେ ଜାତିଦ୍ରୋହୀ, ୨
ଆତ୍ମରକ୍ଷାବ୍ରତୀ ଜନ୍ମଭୂମି-ଅଧଃପାତେ,
ଭାରତର ନାନା ଅଂଶେ ଛନ୍ତି ଆର୍ଯ୍ୟ ଯେତେ
ଭିନ୍ନ ଭିନ୍ନ ନାମ ବହି, ଆର୍ଯ୍ୟତ୍ୱ ହରବେ;
ହୋମାନଳ, ଦାବାନଳ, ବାଡ଼ବଅନଳ
ଏ ଆଦି ବହୁଧ ନାମେ ପ୍ରସିଦ୍ଧ ଜଗତେ

୧ । ଭାବୀ ଅର୍ଥାତ୍ ଭବିଷ୍ୟତ୍ ଅନିଷ୍ଟ ପ୍ରତିଅନ୍ଧ । କେବଳ ବର୍ତ୍ତମାନ ଅର୍ଥାତ୍ ଉପସ୍ଥିତ ସ୍ୱାର୍ଥ ଯେଉଁମାନଙ୍କର ସର୍ବସ୍ୱ । ଗଜ କଚ୍ଛପ ପରସ୍ପରଯୁଦ୍ଧ କରୁଁ କରୁଁ ଉଭୟେ ଗରୁଡ଼ଙ୍କର ଆମିଷ ହୋଇଥିଲେ । ଆର୍ଯ୍ୟମାନେ ସେହିପରି ଅପଣା ମଧ୍ୟରେ କଳହ ଭିଆଇ ଦୁର୍ବଳ ହୋଇ ଯବନର ଅଧୀନ ହେବେ ।

୨ । ଜାତିର ମଙ୍ଗଳରେ ବ୍ୟକ୍ତିର ମଙ୍ଗଳ ଏ ନୀତି ଆର୍ଯ୍ୟମାନେ ବିସ୍ମୃତ ହୋଇ କେବଳ ନିଜ ନିଜ ଉପସ୍ଥିତ ସ୍ୱାର୍ଥ ଲୋଡ଼ିବେ ।

ଯଥା ମର୍ତ୍ତ୍ୟେ, କୁରୁବର୍ଷେ, ପାଞ୍ଚାଳେ, ଅବଧେ ୧
କାଶ୍ମୀରେ, ନେପାଳେ, ପୁଣି ମଗଧେ, ମୈଥିଳେ,
ଅଙ୍ଗେ, ବଙ୍ଗେ, ଓଡ୍ରେ, ପୁଣି କଳିଙ୍ଗେ, ଦ୍ରବିଡ଼େ,
କର୍ଣ୍ଣାଟେ, କେରଳେ, ପାଣ୍ଡ୍ୟେ, ମହାରାଷ୍ଟ୍ରେ, ଗୌଡ଼େ,
ବିଦର୍ଭେ, ନିଷଧେ, ମତ୍ସ୍ୟେ, ତ୍ରିଗର୍ତ୍ତେ, ଗୁର୍ଜ୍ଜରେ,
ଗାନ୍ଧାରାଦି କରି ସିନ୍ଧୁ ମାତୃକ ପ୍ରଦେଶେ, ୨
ନିବସନ୍ତି, କୁରୁବର୍ଯ୍ୟ, ଆର୍ଯ୍ୟସୁତ ଯେତେ ୩
ଆଖ୍ୟାରେ ପୃଥକ, ମାତ୍ର ରକ୍ତେ ସର୍ବେ ଏକ;
ଈର୍ଷ୍ୟାର କୁହୁକେ, ଅହୋ ସାଯୋଗ ଏ କଥା,
ଆର୍ଯ୍ୟରକ୍ତସ୍ରୋତେ ଆର୍ଯ୍ୟ ପ୍ଲାବିବେ ଅବନୀ,
କରର ଆତ୍ମଘାତୀଛିଙ୍କୀଭଜନକ ହୋଇ; ୪
ଫଣିନୀର ଶିରୋମଣି କାଢ଼ି ନେବାପାଇଁ
ନ ଲୋଡ଼େ କେ ? ମାତ୍ର ତାର ବିଷଦନ୍ତ ବେନି
କୃତାନ୍ତର ଦୂତ ମଣି, କରି ପଣିବାକୁ
ଭରସି ପାରେ କି କେହି ? ରାଜନ୍ୟ, ବ୍ରାହ୍ମଣେ ୫

୧ । ଅବଧ — ଅଯୋଧ୍ୟା ।
୨ । ଗାନ୍ଧାର — କାନ୍ଧାହାର । ବର୍ତ୍ତିତକାଳରେ ଏ ଅଞ୍ଚଳ ଆର୍ଯ୍ୟଭୂମିର ଅଂଶ ଥିଲା ।
୩ । କୁରୁବର୍ଯ୍ୟ — କୁରୁଶ୍ରେଷ୍ଠ, ସମ୍ବୋଧନପଦ ।
୪ । ଆତ୍ମଘାତୀ — ଯେଉଁ କାର୍ଯ୍ୟରେ ନିଜର ସର୍ବନାଶ ହୁଏ ।
୫ । ରାଜନ୍ୟ — କ୍ଷତ୍ରିୟ ।

ଭୂତଳେ ଅତୁଳରତ୍ନରଞ୍ଜନକୁନ୍ତଳା·
ଭାରତଭୂଜଙ୍ଗୀର ଏ ଥିଲେ ଛିନା ବେନି
ବିଷଦନ୍ତ, ଯଙ୍କ ଅଗ୍ରେ ଭାଙ୍ଗିବ ତା ବଳ,
ନିର୍ବିଷ ଭାରତେ ଦେଖି, ଆସିବେ ଦଉଡ଼ି
ଦୂରୁଁ ବୈଦେଶିକଦଳ ଶିରୋମଣିଲୋଭ
ପଲେ ପଲେ, କାମ୍ୟଦେହେ ଶଲଭ ଯେପରି;
ବିଶ୍ୱେ ଯାବତ, ବୀର ମୋ ତେଜ ଅଙ୍ଗାରେ,
ପାରେ କି ପରଶି କେହି? ହେଲେ ତା ନିର୍ବାଣ,
ଅବଜ୍ଞାରେ ଲୋକେ ତାହା ଦଳନ୍ତି ଚରଣେ;
ଦ୍ୱିଜାଗ୍ନିର ତେଜଃପୁଞ୍ଜ ଲିଭିଲେ ଯେରୂପେ
ଏ ଆର୍ଯ୍ୟସମାଜ ତଥା ଦଳି ବୈଦେଶିକେ,
ଅକ୍ଷମପତିର ରୂପବତୀନାରୀ ପରି
ନିଯୋଜିବେ ନିଜଭୋଗେ ଭାରତ ଅବନୀ,
ଶାସ୍ତ୍ରେ ସିଂହାର ଯାହା, ଶାସ୍ତ୍ର ଗଲେ ଚାଲି, ୧
ପାର୍ଥ, ସେ ସିଂହାର ହୁଏ ଅନର୍ଥର ହେତୁ, ୨
ଅନର୍ଥର ହେତୁ ତେଣୁ ହେବ କଳିଯୁଗେ

୧ । ସିଂହାର—ଅଳଙ୍କାର, ଭୂଷଣ ।
୨ । ପାର୍ଥ—ପୃଥାପୁତ୍ର ଯୁଧିଷ୍ଠିର, ସମ୍ବୋଧନପଦ ।

ସ୍ୱର୍ଗଭୂମିର ଏହି ଅନୁପମ ଶୋଭା ।"

ବୋଇଲେ ପାଣ୍ଡବମଣି, ଆର୍ଯ୍ୟଶ୍ରେଷ୍ଠମଣି
ଭାବି-ଆର୍ଯ୍ୟଦୁଃଖେ ଦୁଃଖୀ, "ହେ ଦେବ, ଭାରତେ,
ବିଶାଳ ଭାରତେ, ଅହା, ଜଣେ ହୋଇ କେହି
ଜନ୍ମିବ ନାହିଁ କି କେବେ ଉଦ୍ଧାରିବା ପାଇଁ
ଆର୍ଯ୍ୟଙ୍କର ପୁରାତନ ଲୁପ୍ତ ଗଉରବ ?
ବ୍ରାହ୍ମଣର ଏ ଦୁଷ୍କ୍ରିୟା-ପ୍ରତିକ୍ରିୟାରେ
କେହି କି ନୋହିବେ ବ୍ରତୀ ? କେହି କି ନୋହିବେ
ଶକ୍ତ ଭାଙ୍ଗିବାକୁ ସେହି ସ୍ୱାର୍ଥର ଶିକୁଳି
ଶାସ୍ତ୍ରାଖ୍ୟ ଯେ ଅଶାସ୍ତ୍ରର ଅବୈଧ ବନ୍ଧନ ?
ସାମ୍ୟ-ଐକ୍ୟ-ବୀଜମନ୍ତ୍ର ଜୀବନ୍ୟାସ ଦେଇ
ମୃତ ଆର୍ଯ୍ୟସନ୍ତତିଙ୍କି ପୁନରୁଜ୍ଜୀବିତ
କରିବାକୁ କେହି କି ହେ ନୋହିବେ ପ୍ରୟାସୀ ?
ବୀରପୁତ୍ରପ୍ରସୂ, ଅହା, ଏ ମହୀ କି ଆଉ
ପ୍ରସବିବେ ନାହିଁ କେବେ କୁମର ସେ ଭଳି ?"

ତହୁଁ ଦେବ ହବ୍ୟବାହ "ଏ ଭାରତଖଣ୍ଡେ [1]
ପ୍ରଗାଢ଼ କଳିଯୁଗେ ଅଙ୍ଗାର କେବଳ,
ବହୁଶତବର୍ଷ ଗତ ହେଲେ ଏହିରୂପେ,

[1] । ତହୁଁ ଦେବ ହବ୍ୟବାହ—'କହିଲେ' ଏହି କ୍ରିୟାପଦ ଏଠାରେ ଉହ୍ୟ ଅଛି ।

ଯଥାକାଳେ ବାହାରିବ ସେ ଖଣିଗରଭୁ
ମହାମଣି, ଯାର ଦିବ୍ୟଜ୍ୟୋତିର ଛଟକେ
ମ୍ଳାନପ୍ରଭ ହୋଇଯିବ ନଭେ କାବ୍ୟତାରା
ଗୋଧୂଳିର ମଥାମଣି, ଅଥବା କୌସ୍ତୁଭ
ବିଶ୍ୱଲୀଳାଦରପଣ ବିଶ୍ୱମ୍ଭରହୃଦେ;
ଅଭ୍ରଭେଦିହିମଗିରିପାଦେ ଶୁଭକ୍ଷଣେ ୧
ଜନମିବେ ଶାକ୍ୟସିଂହ ଧର୍ମବୀରାଗ୍ରଣୀ
ଦେବଅଂଶେ, ରାଜବଂଶେ ରଜୋଉକ୍ତମନା ୨
କାମଜୟୀ, କାମଜୟୀ ଯଥା ଉମାପତି;
ମୁକ୍ତିକାବକାର ହେମସିଂହାସନ ତେଜି, ୩
ସଂସାରମମତା-ପାଶ ଛେଦି ଜ୍ଞାନବଳେ,
ମହାଜ୍ଞାନୀ, ଜଗତର ଅଜ୍ଞାନଅନ୍ଧାରେ
ଜାଳିବେ ବିଜ୍ଞାନ-ଦୀପ, ଯାର ଜ୍ୟୋତିପ୍ରଭା
ବିଶ୍ୱତମସ୍ତୋମ-ମହାଦାବାନଳରୂପେ. ୪

୧ । ହିମାଳୟର ପାଦଦେଶବର୍ତ୍ତୀ କପିଳବାସ୍ତୁ ନଗରରେ ବୁଦ୍ଧଦେବ ଜନ୍ମ-ଗ୍ରହଣ କରିଥିଲେ ।

୨ । ରଜୋଉକ୍ତମନା—ରଜୋଗୁଣରୁ ମୁକ୍ତ ।

୩ । ବୁଦ୍ଧଦେବ ରାଜସିଂହାସନ ପରିତ୍ୟାଗ କରି ଧର୍ମାଲୋଚନା ଏବଂ ଧର୍ମ ପ୍ରଚାର ସକାଶ ସନ୍ନ୍ୟାସଧର୍ମ ଗ୍ରହଣ କରିଥିଲେ ।

୪ । ଜଗତର ଅଜ୍ଞାନରୂପ ମହାରଣ୍ୟର ଦାବାନଳସ୍ୱରୂପ ।

ଅଲୌକିକ ଲୋକମନ ଦେଶଦେଶନ୍ତରେ,
କି ଉଦୀଚୀ ହୈମବତୀ ସପ୍ତର୍ଷିଶବଳା, ୧
ପ୍ରାଚୀ ତ୍ୱିଷାମ୍ପତିଦ୍ୟୁତି-ଉଷାସ୍ୱଚ୍ଛତରୀ,
କିଅବା ଅବାଚୀ ସ୍ନିଗ୍ଧମଳୟସୌରଭା, ୨
ପ୍ରତୀଚୀ କୁଙ୍କୁମାରୁଣା ବରୁଣଲାଞ୍ଛନା, ୩
ସବୁଦିଗେ ଏହି ଜ୍ୟୋତି ବ୍ୟାପି କ୍ରମେ କ୍ରମେ
ବିଶ୍ଳେଷିବ ଦିଗଙ୍ଗନା ଅବଗୁଣ୍ଠନରୂପେ, ୪
କି ଶୈଳ, କି ପାରାବାର, ନ ପାରିବେ କେହି
ରୋଧିବାକୁ ଏ ଜ୍ୟୋତିର ଦୁର୍ନିବାରଗତି,
ଅଗସ୍ତ୍ୟର ସ୍ପର୍ଶ ହୃଦେ ଧର ଅଭ୍ରପଦେ ୫
ନିର୍ମଳେ ନନ୍ଦର ବାର ଭବଜଳେ ଯଥା,
ସେହିରୂପେ ଏ ଜ୍ୟୋତିର ପାବନପରଶେ
ଅନ୍ତରରୁଁ କଲୁଷରାଶି ଯିବ ଅପସରି;

୧ । ଉଦୀଚୀ—ଉତ୍ତରଦିଗ । ଶବଳ—ଚିତ୍ରବିଚିତ୍ର ।
୨ । ଅବାଚୀ—ଦକ୍ଷିଣଦିଗ ।
୩ । ପ୍ରତୀଚୀ—ପଶ୍ଚିମଦିଗ । ସୂର୍ଯ୍ୟାସ୍ତରାଗରଞ୍ଜିତ ହେବାରୁ କୁଙ୍କୁମାରୁଣା, ବରୁଣଦ୍ୱାରା ଅଧିଷ୍ଠିତ ହେବାରୁ ବରୁଣଲାଞ୍ଛନା ।
୪ । ଦିଗବଧୂମାନଙ୍କର ଘୁମ୍ପୁରସ୍ୱରୂପ ।
୫ । ଶରତ୍କାଳରେ ଦକ୍ଷିଣାକାଶରେ ଅଗସ୍ତ୍ୟତାରାର ଉଦୟ ହୁଏ । ଅଗସ୍ତ୍ୟଙ୍କ ଉଦୟରେ କଲୁଷିତ ଜଳ ନିର୍ମ୍ମଳ ହେବାର କିମ୍ବଦନ୍ତୀ ଅଛି ।

ସାମ୍ୟ-ମୈତ୍ରୀ-ମହାମନ୍ତ୍ରେ ହୋଇଣ ଦୀକ୍ଷିତ,
ଭେଦମତି ପରସ୍ପର ସଂହତିବନ୍ଧନେ ୧
ବଦ୍ଧ ହେବେ ଆର୍ଯ୍ୟଭୂମେ ଆର୍ଯ୍ୟସୁତ ଯେତେ,
ଶାକ୍ୟସିଂହଶିଷ୍ୟାଗ୍ରଣୀ ନୃପଶିରୋମଣି
ଜନ୍ମିବେ ଅଶୋକ ନାମେ ନର ମହାତେଜା
ପୁଷ୍ପପୁରେ, ସୃଜନୀରା ସୁରଧୁନୀତୀରେ; ୨
ଅନନ୍ତରତନପ୍ରସୂ ହିମାଚଳଠାରୁ
ମୁକ୍ତାପ୍ରସୂ ତାମ୍ରପର୍ଣ୍ଣୀ ଯାଏ ଦେଶେ ଦେଶେ ୩
ଉଡ଼ିବ ତାଙ୍କର ଜୈତ୍ରକେତନ ସଗର୍ବେ, ୪
ସ୍ଥାନେ ସ୍ଥାନେ ଶୈଳଗାତ୍ରେ ଅକ୍ଷୟ ଅକ୍ଷରେ
ଶୋଭିବ ଏ ନବଦୀକ୍ଷା କଲୁଷନାଶିନୀ
ଅଶୋକର ଅନଶ୍ୱରଯଶୋଲିପିରୂପେ, ୫

୧ । ସଂହତିବନ୍ଧନେ—ଏକତାବନ୍ଧନରେ ।

୨ । ପୁଷ୍ପପୁର (ଆଧୁନିକ ପାଟଣା) ଅଶୋକ ନୃପତିଙ୍କର ରାଜଧାନୀ ଥିଲା । ପୁଷ୍ପପୁରର ଅନ୍ୟ ନାମ ପାଟଳିପୁତ୍ର ।

୩ । ତାମ୍ରପର୍ଣ୍ଣୀ—ସେତୁବନ୍ଧ ରାମେଶ୍ୱରର ଅନତିଦୂରବର୍ତ୍ତିନୀ ସ୍ୱନାମପ୍ରସିଦ୍ଧ ନଦୀ । ଏହି ନଦୀର ସମୁଦ୍ରସଙ୍ଗମ ଠାରୁ ମୁକ୍ତାଗୁଡ଼ିକ ଉତ୍ତୋଳିତ ହେଉଥିଲା ।

୪ । ଜୈତ୍ରକେତନ—ଜୟସୂଚକ ପତାକା । ଅଶୋକ ସମଗ୍ର ଭାରତବର୍ଷର ସମ୍ରାଟ୍ ଥିଲେ ।

୫ । ଭାରତବର୍ଷର ନାନାପ୍ରଦେଶରେ ପର୍ବତଦେହରେ ଅଶୋକଙ୍କର ଶାସନ ଅଦ୍ୟାପି ଦେଦୀପ୍ୟମାନ । ଓଡ଼ିଶ୍ୟାରେ ସୁଦ୍ଧା ଧଉଳପର୍ବତରେ ଅଶୋକଙ୍କ ଶାସନ ଅଙ୍କିତ ହୋଇଅଛି ।

ବରବାଜିପ୍ରତିଷ୍ଠିତ-ପାରସ୍ୟମଣ୍ଡଳେ, ୧
ଶ୍ୱେତଗଜଜନସେବିତ-ନୀଳଇରାବତୀ ୨
ଯୌତ ବସ୍ତ୍ରେ, ବର୍ଣ୍ଣୋଜ୍ଜ୍ୱଳ-ଚୀନପ୍ରସୂ ଚୀନେ, ୩
କିମ୍ପୁରୁଷବର୍ଷେ (ଯହିଁ ମାନସଦର୍ପଣେ
ହରଶୈଳ ହେରେ ନିଜ ଭୀଷଣମୂରତି,) ୪
ହରିବର୍ଷେ ଯହିଁ ହିମବର୍ଣ୍ଣୀ ଉଦୀଚୀ
ମଣ୍ଡେ ନିଜ ଭାଲ ଚନ୍ଦ୍ରଜ୍ୟୋତିଃପୁଣ୍ଡ୍ରକେ, ୫
ନୀଳରତ୍ନାକରବକ୍ଷେ ପଦ୍ମରୂପିଣୀ
ସାଗରସମ୍ଭବାଲଙ୍କା-ଶ୍ୟାମଳଉରସେ, ୬

୧ । ପ୍ରାଚୀନକାଳରେ ପାରସ୍ୟ ଦେଶ ଉତ୍କୃଷ୍ଟ ଘୋଟକ ସକାଶେ ପ୍ରସିଦ୍ଧ ଥିଲା ।

୨ । ଇରାବତୀ ବ୍ରହ୍ମଦେଶର ପ୍ରଧାନ ନଦୀ । ଇରାବତୀ ଉପତ୍ୟକାରେ ଶ୍ୱେତହସ୍ତୀ ଦେଖାଯାନ୍ତି ।

୩ । ପ୍ରାଚୀନକାଳରେ ଚୀନର କୌଷେୟବସ୍ତ୍ର (ଚୀନାଂଶୁକ) ଭାରତବର୍ଷରେ ଅତ୍ୟନ୍ତ ଆଦୃତ ହେଉଥିଲା ।

୪ । କିମ୍ପୁରୁଷବର୍ଷ—ତିବ୍ବତ, ହରଶୈଳ—ମାନସରୋବରର ସନ୍ନିହିତ କୈଳାସଗିରି ।

୫ । ହରିବର୍ଷ—ସାଇବେରିଆ ଦେଶ, ଏହି ଦେଶର ଉତ୍ତରାକାଶ ବିବିଧବର୍ଣ୍ଣ ଜ୍ୟୋତିଃକଳକରେ ଶୋଭିତ । ବୌଦ୍ଧପରିବ୍ରାଜକମାନେ ସାଇବେରିଆ ଯାଏ ନିଜଧର୍ମ ପ୍ର ର କରିଥିଲେ ।

୬ । ସିଂହଳଦ୍ୱୀପ ଅତି ଉର୍ବରା । ବନ ଏବଂ ଉପବନରେ ସର୍ବଦା ହରିତ୍-ଭାସ୍ୱମାନ ।






ପ୍ରାଚୀଦ୍ୱୀପପୁଞ୍ଜେ ଯହିଁ ଗୌରବ ଗେହର ୧
ମଞ୍ଜୁଳପ୍ରଫୁଲ୍ଲଏଲାଲବଙ୍ଗକୁଞ୍ଜରୁ ,
ପାରାବାରବକ୍ଷେ ବହେ ସ୍ନିଗ୍ଧଗନ୍ଧବହ
ନାବିକହୃଦୟେ ଗୃହସ୍ମୃତି ଉପୁଜାଇ,
ଶୋଭିତ ସଂସାରାର୍ଣ୍ଣବଦ୍ୱୀପସ୍ତମ୍ଭ ପ୍ରାୟେ ୨
ସ୍ୱରଗୁଁ ବିକୀର୍ଣ୍ଣ ହୋଇ ଏହି ଧର୍ମଜ୍ୟୋତି,
ମାତ୍ର ନିଭିଯିବ ଏହା ଅଚିରେ ସ୍ୱରଗେ;
ଆଦିତ୍ୟପ୍ରତିମତେଜା, ଅରାତିବିଜୟୀ
ବୀରେନ୍ଦ୍ର ବିକ୍ରମାଦିତ୍ୟ ଉଜ୍ଜୟିନୀପତି ୩
ଦ୍ୱିଜାତିର ପକ୍ଷ ହୋଇ, ପ୍ରଚଣ୍ଡ ବିକ୍ରମେ
ଆକ୍ରମିବେ ଶାକ୍ୟସିଂହଶିଷ୍ୟ-ରାଜଦଳେ,
ପ୍ରବଳ ମାରୁତେ, ଅହା, ତୁଳାରାଶି ଯଥା,
ପ୍ରତାପେ ତାଙ୍କର ସର୍ବେ ଛିନ୍ନଭିନ୍ନ ହୋଇ
ତେଜିବେ ଏ ଭୂମି, ଜନ୍ମା ନବଧର୍ମେ ମତି;
ନିଜ ଦଣ୍ଡ ପ୍ରତିଷ୍ଠିତ କରିବ ଉଲ୍ଲାସେ

୧ । ପ୍ରାଚୀଦ୍ୱୀପପୁଞ୍ଜ—ଯବଦ୍ୱୀପ, ସୁମାତ୍ରା ପ୍ରଭୃତି ।

୨ । ଧର୍ମ ଭବାର୍ଣ୍ଣବର ଦୀପସ୍ତମ୍ଭପରି । ଦୀପସ୍ତମ୍ଭଯୋଗୁଁ ନାବିକମାନେ ନିରାପଦରେ ସମୁଦ୍ରପଥରେ ବିଚରଣ କରନ୍ତି । ଜୀବନପକ୍ଷରେ ଧର୍ମ ସେହିପରି ।

୩ । ସୁପ୍ରସିଦ୍ଧନାମା ବିକ୍ରମାଦିତ୍ୟ ବୌଦ୍ଧମାନଙ୍କର ଉଚ୍ଛେଦସାଧନରେ ବ୍ରତୀ ହୋଇଥିବାର କିମ୍ବଦନ୍ତୀ ଅଛି ।




ପୁଣି ଦଣ୍ଡଧର କଲି, ଏ ସୁଯୋଗ ପାଇ;
ଥିଲା ଯେ ତିମିରେ ପୁଣି ବୁଡ଼ିବ ଭାରତ
ସେ ତିମିରେ, ସତ୍ୟଧର୍ମ ହୋଇ ଅସ୍ତମିତ,
ଦ୍ୱୀପରୂପେ ଥିବ ମାତ୍ର ଏ ପାପପ୍ଲାବନେ
କେବଳ ଗୋଟିଏ ସ୍ଥଳୀ ସମଗ୍ର ଭାରତେ ;
ଧନ୍ୟ ରେ ଉତ୍କଳ ତୁହି, ଏ ଘୋର ଅନ୍ଧାରେ
ତୁହି ସେ ରଖିବୁ ନିଜ ପୋଷି ସ୍ନେହଦାନେ
ଗୁପତେ ଏ ଧର୍ମ-ଦୀପ ନୀଳାଦ୍ରି କନ୍ଦରେ, ୧
ପୁଣ୍ୟଧାମ ! ଅସ୍ତ ଗଲେ କମଳିନୀସଖା,
ରଖଇ ମୋ ଶିଖା ଯଥା ଆଦରେ ସମ୍ଭାଳି
ପବିତ୍ର-ସାବିତ୍ରକ୍ଷେତ୍ରାଗ୍ନି ତମିସ୍ରା-ତମସେ; ୨
ଅଜ୍ଞାନ-ଅନ୍ଧାରେ, ଅହା, ହେବେ ଅନ୍ଧୀଭୂତ
ପୁଣି ଅଳ୍ପଦିନେ ଆର୍ଯ୍ୟ, ସ୍ୱାର୍ଥାନ୍ଧ ବୃତ୍ତିକେ
ଭିଡ଼ିବେ ସୁଦୃଢ଼େ ପୁଣି ସ୍ୱାର୍ଥର ଶାଙ୍କୋଳ
ଭାରତର ଗଳଦେଶେ, ବଜ୍ରଗ୍ରନ୍ଥି ଦେଇ;
ଔଷଧେ ଶମିତ ବ୍ୟାଧି ଛିଦ୍ର ପାଇ ଯଥା

୧ । କେବଳ ଓଡ଼ିଶାରେ ବିଶେଷତଃ ଶ୍ରୀକ୍ଷେତ୍ରରେ ବୌଦ୍ଧଧର୍ମ ବହୁକାଳ ସ୍ଥାୟୀ ହୋଇ, ପଚ୍ଛକୁ ରୂପାନ୍ତରିତ ହୋଇଯାଇଥିବାର କଥା ପ୍ରାତ୍ନି-କମାନଙ୍କର ଗବେଷଣାଦ୍ୱାରା ସ୍ୱୀକୃତ ହୋଇଅଛି ।

୨ । ରାତ୍ରିକାଳରେ ସୂର୍ଯ୍ୟତେଜ, ଅଗ୍ନିଠାରେ ନିହିତ ହେବାର ପ୍ରସିଦ୍ଧି ଅଛି । ସାବିତ୍ର—ସୂର୍ଯ୍ୟସମ୍ବନ୍ଧି । ତମିସ୍ରାତମସେ—ନୈଶ ଅନ୍ଧକାରରେ ।

ଅକ୍ରମଇ ରୋଗେ ଦେହ ଦ୍ୱିଗୁଣ ବକ୍ରମେ,
ଲଭିବ ଭାରତ ପୁଣି ଦାରୁଣ ଦୁର୍ଗତି,
ପାପୋର ପୁରୁଷକାରମହିମା ପୁରୁଷେ,
ମୃତ, ଜଡ଼ପିଣ୍ଡବତ ହେବେ ଅଳ୍ପଦିନେ
ନିରୁତ୍ସାହ, ନିରୁଦ୍ୟମ, ଦୈବପରାୟଣ,
ପୁଣି ଛିନ୍ନଭିନ୍ନ ହୋଇ ପରସ୍ପରେ ଦ୍ୱେଷୀ
ହେବେ ଆର୍ଯ୍ୟାବର୍ତ୍ତବାସୀ, ଆର୍ଯ୍ୟଧ୍ୱଂସଲାଗି
ଯବନଙ୍କୁ ଆହ୍ୱାନିବେ ସେହି ଆର୍ଯ୍ୟେ ପୁଣି,
କୁଠାରେ ଲଗନ ହୋଇ ବେଣ୍ଟରୂପେ ଯଥା
ନାଶେ ତରୁ ବନଦେଶେ ଅନ୍ୟ ତରୁଦଳେ,
ଯବନ ସଙ୍ଗତେ ମିଶି ଆର୍ଯ୍ୟକୁଳାଙ୍ଗାରେ
ହାଣିବେ ଆର୍ଯ୍ୟଙ୍କୁ, ଅହୋ, ଏହି ଆର୍ଯ୍ୟଭୂମେ; ୧
ଅସ୍ୱାଧୀନତାର ଦାସ, ପରକୁ ଦେଖାଇ
ଅସ୍ତ୍ରବଳ, ସେ ପାପର ପ୍ରାୟଶ୍ଚିତ୍ତରୂପେ
ସ୍ୱଶୋଣିତେ ଆର୍ଯ୍ୟେ ଧନ୍ୟ କରିବେ ଉଜ୍ଜ୍ୱଳ
ହିମାଦ୍ରିରୁ କୁମାରୀର ତାଳୀବନଯାଏ; ୨

(୧) କାନ୍ୟକୁବ୍ଜପତି ଜୟଚନ୍ଦ୍ର ଏହି କୁଳାଙ୍ଗାରମାନଙ୍କର ଅଗ୍ରଣୀ ହୋଇ-ଥିଲେ ।

୨ । ହିମାଳୟଠାରୁ କୁମାରିକାର ତାଳବନ ପର୍ଯ୍ୟନ୍ତ ଅର୍ଥାତ୍ ସମଗ୍ର ଭାରତବର୍ଷରେ ।

ହିମାଦ୍ରିର ଦେବଦାରୁକୁଞ୍ଜସଦନେ,
ମଳୟେ ଚନ୍ଦନଦ୍ରୁମସ୍ନିଗ୍ଧଚ୍ଛାୟାତଳେ,
ଭାରତର ଦେବ ଦେବୀ ନରଜନେ ବସି
ଢଳନ୍ତିବେ ଅଶ୍ରୁ ଦେଖି ଆର୍ଯ୍ୟର ଦୁର୍ନୀତି;
କହିଲି ଘଟିବ ଯାହା, ବତ୍ସାର ଏ କଥା
କହିବାକୁ ନାହିଁ ଆଉ ଅବସର ଏବେ,
ଯାମ ମାତ୍ର ପାହିବାକୁ ଅଛି ବିଭାବରୀ,
ଦେଖ ଅସ୍ତମିଲାଣି ଏବେ ଧ୍ରୁବମେରୁ ତୁଳ
ମେରୁଜରେ ସପ୍ତର୍ଷିର ସୁବର୍ଣ୍ଣବେଙ୍ଗଳା, ୧
ଦିବ୍ୟାଞ୍ଜନ ଯୋଗେ ତୁମ୍ଭ ଦୃଷ୍ଟିକି ପ୍ରସାର
ଦେଶେ, କାଳେ, ସବୁ ଦୃଶ୍ୟ ସଂକ୍ଷେପେ ଦେଖାଇ, ୨
ଯାଉଛୁ ମେଲାଣି ଦେଇ, ଶିବ, କୁରୁମଣି ।

---

୧ । ଉତ୍ତରାକାଶରେ ସପ୍ତର୍ଷି ଧ୍ରୁବଙ୍କୁ ପ୍ରଦକ୍ଷିଣ କରି ଅପର ପାର୍ଶ୍ୱକୁ ଆସି-ଲେଣି । ଧ୍ରୁବ ସହିତ ମେରୁର ଏବଂ ସପ୍ତର୍ଷି ସହିତ ବେଙ୍ଗଳାର ଉପମା । ପ୍ରଥମ ମେରୁ ଶବ୍ଦର ଅର୍ଥ କେନ୍ଦ୍ରସ୍ତମ୍ଭ, ଦ୍ୱିତୀୟ ମେରୁଶବ୍ଦର ଅର୍ଥ ଉତ୍ତରଦିଗ । ସପ୍ତର୍ଷିଙ୍କର ଧ୍ରୁବପ୍ରଦକ୍ଷିଣ ରଜନୀର ଅବସାନସୂଚକ ।

୨ । ଦେଶେ, କାଳେ—ଦୂରଦେଶପ୍ରତି ଏବଂ ଭବିଷ୍ୟତ୍କାଳପ୍ରତି ।

## ଷଷ୍ଠ ସର୍ଗ ।

—— ——

ବିବିଧ ଅବଧାନେ ଅସ୍ତୁ ଏ ଗୀତି ତୁମ୍ଭର,
ହେ ସୁରେନ୍ଦ୍ର, ମନ୍ଦ୍ରନାଦ-ପ୍ରପାତର ପତି, ୧
ବାମଣ୍ଡାମଣ୍ଡଳେଶ୍ୱର, ଉତ୍କଳମଣ୍ଡନ;
ତୁମ୍ଭ ଶୁଭ-ଅବିର୍ଭାବେ ହୋଇଛି ଉତ୍କଳେ,
ଦେବଦୁର୍ଗ, ଦେବ, ଏବେ ତୀର୍ଥ ସାରସ୍ୱତ, ୨
ବୁଧହଂସ-କେଳିସ୍ଥଳଃ ଅବଦ୍ୟା-ଉତ୍ସରେ;

୧ । ବାମଣ୍ଡା ରାଜ୍ୟର ଅଧୀଶ୍ୱର ମହାରାଜ ଶ୍ରୀଯୁକ୍ତ ବାସୁଦେବ ସୁଢ଼ଳଦେବଙ୍କ ପ୍ରତି ସମ୍ବୋଧନ । ପ୍ରୋକ୍ତ ପ୍ରପାତର ନାମ ପ୍ରଧାନ ପାଟ । ଏହା ବାମଣ୍ଡା ରାଜଧାନୀ ଦେବଗଡ଼ର ଅତି ନିକଟବର୍ତ୍ତୀ । ଏହାର ମନ୍ଦ୍ରନାଦ ସର୍ବଦା ଦେବଗଡ଼ରେ ଶ୍ରୁତ ହୁଏ । ଏହି ପ୍ରପାତ ଓଡ଼ିଶାର ଗୋଟିଏ ପ୍ରଧାନ ଦୃଶ୍ୟ । 'ପ୍ରଧାନପାଟ' ନାମକ ଖଣ୍ଡିଏ ଅଭିନବ କାବ୍ୟରେ ଏହି ପ୍ରପାତର ସୁବିସ୍ତୃତ ବର୍ଣ୍ଣନା ହୋଇଅଛି ।

୨ । ଦେବଗଡ଼ ଉତ୍କଳସାହିତ୍ୟଚର୍ଚ୍ଚାର ଅନ୍ୟତର କେନ୍ଦ୍ର । ଉତ୍କଳରେ ସମ୍ପ୍ରତି ସାହିତ୍ୟଚର୍ଚ୍ଚାର ମଧ୍ୟ ସର୍ବପ୍ରଧାନ କେନ୍ଦ୍ର ।

ରଜତକାଞ୍ଚନ ମୁକ୍ତାମଣିରେଗଠିତ
ଧନମତ୍ତଭୂପଙ୍କର ଗଣ୍ଡି ଧନରୂପୀ,
ତୁଚ୍ଛ ଅଳଙ୍କାରେ ତୁମ୍ଭେ ପ୍ରୀତି ନ ବଳାଇ,
ଅପ୍ରାକୃତ ଅଳଙ୍କାର ଖୋଜିଲ ଯତନେ, ୧
ହେ ନୃପ-ସବିତା, ପଶି କବିତାଭଣ୍ଡାରେ,
ସେ ଭଣ୍ଡାରୁ ବାଛି ବାଛି, ଗଢ଼ାଇ କୌଶଳେ
ଦେଖାଇଲ ନବଭୂଷା ଉତ୍କଳବନ୍ଧୁକେ,
ତାକେ ଯାର ନାହିଁ କ୍ଷୟ, ନ ଲଗଇ ଯହିଁ
କଳଙ୍କ, ତସ୍କର ଯାହା ନ ପାରଇ ହରି,
ଯା ଝଟକ କେବେ ଲବେ ନ ପାଇବ ମ୍ଳାନ
ଚିରକାଳ, ନାଶ୍ୟ ରତ କୀର୍ତ୍ତିନକ୍ଷତ୍ରେ; ୨
କେତେ ଯେ ରତନ ଅଛି ବାଗ୍‌ଦେବୀ-ଭଣ୍ଡାରେ
ତା ସବୁ ଗୁମ୍ଫରେ ଜଣା, ତୁମ୍ଭର ଭର୍ତ୍ସନା
ମୂର୍ଖଶ୍ଳାଘାଠାରୁ ଶ୍ଳାଘ୍ୟ ମଣେ ଶତଗୁଣେ, ୩
ଆମନ୍ତ୍ରିଲି କର ଯୋଡ଼ି ଯୋଗ୍ୟ ଶୋଭା ଜାଣି,
ଦୀର୍ଘ କାଳ ଦୀପ ପ୍ରାପ୍ତେ ତୁମ୍ଭର ଅଗ୍ରଜ

---

୧ । ମହାରାଜ ସୁଦଳଦେବ ଓଡ଼ିଆ ଅଳଙ୍କାରଗ୍ରନ୍ଥର ପ୍ରଥମପ୍ରଣେତା ।

୨ । କୀର୍ତ୍ତି-ନକ୍ଷତ୍ରନାଶୀ କାଳପ୍ରଭାବରେ ପ୍ରାକୃତ ଅଳଙ୍କାରର ପ୍ରଭା ମଳିନ ହୁଅଇ । ମାତ୍ର ଭବଦୀୟଙ୍କର ଅପ୍ରାକୃତ ଅଳଙ୍କାରର ପ୍ରଭା ଚିରଦେଦୀପ୍ୟମାନ । କାଳ ସେଥିର ପ୍ରଭା ମଳିନ କରି ନ ପାରେ ।

୩ । ମୂର୍ଖର ପ୍ରଶଂସା ଅପେକ୍ଷା ପଣ୍ଡିତର ଭର୍ତ୍ସନା ଶ୍ରେୟସ୍କର ।

ଶ୍ରୀ ସଚ୍ଚିଦାନନ୍ଦ ଦେବ କୁମାରପ୍ରତିମ- ୧
କୁମାର ସହିତେ ଆସି ବାଗ୍‌ଦେବୀମଣ୍ଡପେ
କର ଅଧିଷ୍ଠାନ, ଯେବେ ଶୁଣିବ ଏ କଥା
ପାବନୀ, ପାବନୀ ଯଥା ଦୁରିତାପହାରିଣୀ
କଳୁଷନାଶିନୀ ତୁମ୍ଭ କୁଳ-ଅଧିଦେବୀ । ୨
    ଅଗ୍ନିଙ୍କ ବଚନ ଶୁଣି ଦୀର୍ଘଶ୍ୱାସ ତେଜି,
ତୃଷ୍ଣୀମ୍ଭାବ ଭଜି ରାଜା ରହିଲେ ବିଷାଦେ
ବହୁକ୍ଷଣ, ଚିତ୍ରାର୍ପିତପ୍ରତିମା ଯେସନ;
ସିଙ୍ଗଡ଼ାତଟିନୀଧୌତ ଅଙ୍ଗାରପ୍ରାନ୍ତରେ
ପବିତ୍ରହିଙ୍ଗୁଳାପୀଠେ, ଜଳେ ଉଠେ ଯଥା
ଅଚମ୍ଭିତେ ବହ୍ନିଶିଖା ନିଦାଘନିଶୀଥେ, ୩
ଅନ୍ତରେ ଉଠିଲା ଜଳି ମନ୍ୟୁଚିରନ୍ତନେ
ବହ୍ନିଶିଖା ସେହିମତି, ସେ ଶିଖାମଧ୍ୟରୁ
ବାହାରିଲେ ବଳଭୂମି ପ୍ରଭେ ଉଦ୍ଭାସି

୧ । ବାମଣ୍ଡାରାଜ୍ୟର ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ଯୋଗ୍ୟପିତାର ଯୋଗ୍ୟପୁତ୍ର । କୁମାରପ୍ରଦ୍ୟୁମ୍ନ କୁମାର—କାର୍ତ୍ତିକେୟ ପର ଧନ୍ୟ ।

୨ । ଗଙ୍ଗାଦେବୀ ବାମଣ୍ଡାରାଜବଂଶର ଅଧିଷ୍ଠାତ୍ରୀ ଦେବତା ।

୩ । ହିଙ୍ଗୁଳାପୀଠ—ତାଳଚେରରାଜ୍ୟରଅନ୍ତର୍ଗତ । ସିଙ୍ଗଡ଼ା ନଦୀ ଏହାପାରେ ପ୍ରବାହିତା । କମ୍ବଦନ୍ତୀ ଅଛି ଯେ ଏଠାରେ ଅକସ୍ମାତ୍ ଅନଳର ଆବିର୍ଭାବ ହୋଇ ହିଙ୍ଗୁଳାଦେବୀଙ୍କର ଅଧିଷ୍ଠାନ ହୁଏ । ଏ ଅଞ୍ଚଳରେ ପଥରକୋଇଲାର ଖଣି ଅଛି ।

ହେମଅର୍ଘ୍ୟପାତ୍ରହସ୍ତେ ସ୍ୱାହା ମହାଦେବୀ ୧
ଜ୍ୟୋତିର୍ମୟୀ, ଅହା, ଯଥା ମହିଷମର୍ଦ୍ଦିନୀ,
ବାଳେନ୍ଦୁଶେଖରା, ନୀଳପ୍ରଲମ୍ବକୁନ୍ତଳା,
ଭାସ୍ୱରରଜତଶୂଳ ଧରି ବରଭୁଜେ
ବାହାରିଲେ ଯଜ୍ଞକୁଣ୍ଡୁ ବିରଜାସୁନ୍ଦରୀ
ଦେବଯଜ୍ଞେ, ପୂତନୀର ବୈତରଣୀତୀରେ; ୨
ଅର୍ଘ୍ୟପାତ୍ର ନହି ଦେବୀ ବୀତିହୋତ୍ରକରେ, ୩
ବିଜୁଳୀର ବେଗେ ଗଲେ ଉଭେଇ ପଲକେ;
ସେ ଅନଳୁ ଭସ୍ମ ନେଇ, ସେ ଅର୍ଘ୍ୟେ ମିଶାଇ
ରଚି ଦିବ୍ୟାଞ୍ଜନ ତହୁଁ ଦେବ ହବ୍ୟବାହ
ଯୁଧିଷ୍ଠିର ପ୍ରତି ଚାହିଁ କହିଲେ ଏସନ
"ହେ ବୀର, ଯାବତ ମୋର ଅଧିଷ୍ଠାନ ଏଥି,
ଏ ଅଞ୍ଜନଯୋଗେ ତୁମ୍ଭ ଇନ୍ଦ୍ରିୟନିକରେ
ପ୍ରସରିବ ଦିବ୍ୟଶକ୍ତି, ଦେଖିବ ବହୁସ୍ଥେ
ଦୃଶ୍ୟାବଳୀ, ଏବେ ଯାହା ନରନେତ୍ରାତୀତ,
ଭାରତର ଭାଗ୍ୟପଟ୍ଟ ଫିଟାଇବ ଆଜି

୧ । ସ୍ୱାହା—ଅନଳପତ୍ନୀ ।
୨ । ଯାଜପୁରର ବିରଜାଦେବୀ ବର୍ତ୍ତିତବେଶରେ ଯଜ୍ଞାନଳରୁ ବାହାରିଥିବାର କଥା 'ବିରଜାମାହାତ୍ମ୍ୟ'ରେ ଅନୁସନ୍ଧେୟ ।
୩ । ବୀତିହୋତ୍ର—ଅଗ୍ନି ।

ଦେଶକାଳବ୍ୟବଧାନ-ଉତ୍ତୋଳନପଟ୍ଟ ୧
ଏ ଅଞ୍ଜନ ତୁମ୍ଭ ଆଗେ ତୁମ୍ଭ ଚକ୍ଷୁମନରେ;
ଏହି ସେ ଅଞ୍ଜନ ଯାହା ଦ୍ୱୈପାୟନଋଷି
ଦେଇଥିଲେ ସଞ୍ଜୟଙ୍କୁ, ଏ ଅଞ୍ଜନଯୋଗେ
ଦୂରକୁରୁକ୍ଷେତ୍ରରଣ ଦେଖି ସ୍ୱନୟନେ,
କହୁଥିଲେ ବାର୍ତ୍ତା ତୁମ୍ଭ ଜ୍ୟେଷ୍ଠତାତପଦେ
ହସ୍ତିନାପ୍ରାସାଦେ ବସି ଅଦୃଶ୍ୟଦରଶୀ, ୨
କହ ତ ଦେଖିବ, ବୀର, ଦେଖାଇ ଏକ୍ଷଣି
ସେ ଦୃଶ୍ୟ, ଅନ୍ତର ହେବ ନା ପାହୁଁ ଶର୍ବରୀ ”
କହିଲେ କୌନ୍ତେୟ, "ଦେବ, ଦେଖାଅ ତରୂପେ
ଯବନର କରଗତ ହେବ କଳିଯୁଗେ
ହସ୍ତିନା, ନଗରୀଶ୍ରେଣୀ, ବୀରପ୍ରସବନୀ ”
ଉତ୍ତରିଲେ "ବତ୍ସ ବୀର, ବହୁଦିନପରେ
ଜାହ୍ନବୀର ଗର୍ଭେ ହୋଇ ବିଲୀନା ହସ୍ତିନା,
ଆର୍ଯ୍ୟରାଜଧାନୀ ହେବ ଇନ୍ଦ୍ରପ୍ରସ୍ଥପୁରେ
ସୁପ୍ରଥିତ ମର୍ତ୍ତ୍ୟେ ହୋଇ ଦିଲ୍ଲି-ଅଭିଧାନେ,”

୧ । ଦୂରଦେଶସ୍ଥିତ କିମ୍ବା ଭବିଷ୍ୟତ୍‌ଗର୍ଭନିହିତ ବସ୍ତୁକୁ ଯାହା ପ୍ରତ୍ୟକ୍ଷ କରାଏ ।

୨ । କୌରବଦ୍ୱାରପାଳ ସଞ୍ଜୟ ବ୍ୟାସଦେବଙ୍କ ପ୍ରସାଦରୁ ଦିବ୍ୟଚକ୍ଷୁ ଲାଭ କରି ଅନ୍ଧରାଜା ଧୃତରାଷ୍ଟ୍ରଙ୍କ ସମ୍ମୁଖରେ କୁରୁକ୍ଷେତ୍ର ଯୁଦ୍ଧ ବର୍ଣ୍ଣନ କରୁଥିଲେ ।

ଏଥା ବୋଲି ବସାଇଣ ପୂର୍ବୋତ୍ତରମୁଖେ ୧
ତାଙ୍କୁ, ଉଚ୍ଚାରି ମନ୍ତ୍ର, ଦେବ ବଜ୍ରବସୁ
ଅଞ୍ଜନ ଲଗାଇ ଦେଲେ ତାଙ୍କର ନୟନେ,
ଖଚନ୍ଦ୍ରଉଦ୍ଭବେ ଯଥା ବହ୍ନିକଣାଯୋଗେ ।
ଦୃଷ୍ଟିବୃନ୍ଦେ ଚମକାଇ, ଭେଦି ନୈଶତମଃ,
ଅଗ୍ନେୟବାଣର ଗତି ସ୍ଫୁରେ ଅତର୍କିତେ,
କମ୍ପା ନୈଶସିନ୍ଧୁବାହୀ ନାବିକର ଅଗି
ଠିକରାଇ, ଉଠେ ଯଥା ଦିଗନ୍ତ ଉଜଳି,
ନୀଳଉର୍ମିମାଳା ଭେଦି ବାଡ଼ବାଗ୍ନିଜ୍ୱାଳା,
ସ୍ଫୁରିଲା ସହସା ଅଗ୍ରେ ଶଙ୍କଗୃହସୌଧ-
ତୋରଣ ଶୋଭନା ଦିଲ୍ଲି ପତାକାମାଳିନୀ,
ମନୋମୋହକରୀ ସୁଖସ୍ୱପନ ଯେପରି,
ତରୁଣଅରୁଣରାଗେ ଦିଶି ଝକଝକ
କାଞ୍ଚନକଳସ ତୁଙ୍ଗଦେବାଳୟଚୂଡ଼େ
ଶାରଦସନ୍ଧ୍ୟାଭ୍ରପୁଞ୍ଜ ପ୍ରାୟେ ସମୁଜ୍ଜ୍ୱଳ;
ସୁନ୍ଦର ଗୋପୁରବୃନ୍ଦ ଜଡ଼ିତ ରତନେ, ୨
ନାନାବର୍ଣ୍ଣଶୋଭ ଶ୍ରେଣୀ ଶ୍ରେଣୀ ସୁମ୍ୟାବଳୀ

୧ । ସହ୍ୟାଦ୍ରିର ଉତ୍ତରପୂର୍ବରେ ଦିଲ୍ଲି ନଗରୀ ।
୨ । ଗୋପୁର—ବୃହଦାକାର ତୋରଣବିଶେଷ । ଦାକ୍ଷିଣାତ୍ୟର ମନ୍ଦିର-
ମାନଙ୍କରେ ଅନେକ ଗୋପୁର ଦେଖାଯାଏ ।

ଅଳିନ୍ଦେ, ଦ୍ୱିରଦରଦଗବାକ୍ଷଶୋଭିତ
ସ୍ଫଟିକଜଗତୀ ସୌଧେ ମନୋହର ଅତି, ୧
ରତ୍ନଜାଳେ ସମୁଜ୍ଜ୍ୱଳ ସ୍ୱର୍ଣ୍ଣ-ବୀଥିକା
ଅଗସ୍ତ୍ୟଶୋଷଣେ ଶୁଷ୍କରତ୍ନାକର-ଛବି,
ଅବିରତ ମୌକ୍ତିକ-ଶୀକରବର୍ଷୀ-
ପ୍ରଧାନପାଠର ଦୁତପ୍ରସାରପ୍ରତିମ · ୨
ଉତ୍ସମାଳେ ବେଢ଼ା ଇନ୍ଦ୍ରନୀଳକ୍ରୀଡ଼ାଗିରି,
ନଭସ୍ପୃଶୀ କୀର୍ତ୍ତିସ୍ତମ୍ଭ, କୈଳାସସଙ୍କାଶ
ପ୍ରାକାର, ସୁରମ୍ୟ ତରୁ ଲତା ଗୁଲ୍ମାଗମେ,
ମଞ୍ଜୁଳ ପ୍ରବାଳେ, କଳି-ସୁମନ-ସ୍ତମ୍ଭାରେ,
ଅଦୂରେ କାଳିନ୍ଦୀସ୍ରୋତେ ଧାଏଁ ଖରବେଗେ ୩
ଲୀଳାତରୀ, ରଙ୍ଗେ ତୋଳ ଧବଳପଟ୍ଟିକା, ୪
ହଂସାବଳୀକେଳି ଦ୍ୟୁତି ତତ୍ତେ ଉପୁଜାଇ;
ତୋରଣସମ୍ମୁଖେ ମଣ୍ଡାବିସ୍ତୃତପ୍ରାନ୍ତରେ
ଲୁଣ୍ଠ ହେଉଛନ୍ତି ଅଜ ଚଉଦିଗୁଁ ଅସି,

୧ । ଜଗତୀ—ଚନ୍ଦ୍ରଶାଳା ।
୨ । ପ୍ରଧାନପାଠ—ବାମଣ୍ଡାର ସ୍ୱନାମପ୍ରସିଦ୍ଧ ପ୍ରସାଦ । ସର୍ଗାରମ୍ଭରେ ଏହି ପ୍ରସାଦର ଉଲ୍ଲେଖ ହୋଇଅଛି ।
୩ । କାଳିନ୍ଦୀ—ଯମୁନା ।
୪ । ଲୀଳାତରୀ—କ୍ରୀଡ଼ାନୌକା । ପଟ୍ଟିକା—ଅଞ୍ଚଳ ।

ନାନାଜାତିସେନା ନାନାବେଶଭୂଷାଧାରୀ,
ଗିରିଯୁଦ୍ଧେ ବିଶାରଦ ଗିରିଦୁର୍ଗ ଭେଦି
ଅସ୍ତ୍ରହସ୍ତ ଅଜାମିଲେ ଦୀପ୍ତିମନ୍ତ ତେଜେ, ୧
ଦୀର୍ଘବକ୍ଷେ ବିଶାଳଶୂଳ ଥୋଇ ସ୍କନ୍ଧଦେଶେ
ଧାଡ଼ି ଧାଡ଼ି, ଦୀପ୍ତ ଯେସନେ ଫଣାଧରଫଣା; ୨
ଚକ୍ରାଙ୍କକେତନବର ସମୀରେ ଉଡ଼ାଇ ୩
ହସ୍ତେ ଚକ୍ର ଘେନ ଅପେ ଗୁର୍ଜ୍ଜରବାସିନୀ
ବୀର୍ଯ୍ୟବତୀ ଉତ୍କର୍ଷସ୍ଥଳା ଯଦୁଅନୀକିନୀ,
(ତୁମ୍ଭ ଯୋଗେ, ବାସୁଦେବ ବାମଣ୍ଡାମଘବା,
ହେ ଭୂପାଳମୌଳିମଣି, ମଣ୍ଡିତ ଏକାଳେ
ଉଜ୍ଜ୍ୱଳେ ଯେ ମହାବଂଶ) ଦୁର୍ଦ୍ଧର୍ଷ ସଂଗ୍ରାମେ; ୪
ହେମସାରସନେ ଗାଢ଼େ ବାନ୍ଧି ସିଂହକଟି
ଅସଇ ସୈନ୍ଧବୀଚମୂ, ଗାଲମୋଚ୍ଛଧାରୀ, ୫

୧ । ଅଜାମିଲ—ଆଜମିରନବାସୀ । ଆଜମିର ଗିରିବେଷ୍ଟିତ ଅଟେ । ଏ ଅଞ୍ଚଳରେ ଅନେକ ଗିରିଦୁର୍ଗ ଅଛି ।

୨ । ଦୀପ୍ତ—ଦୀପ୍ତିମନ୍ତ ।

୩ । ଗୁର୍ଜ୍ଜର ଅନ୍ତର୍ଗତ ଦ୍ୱାରକା ଯାଦବମାନଙ୍କର ରାଜଧାନୀ ଥିଲା । ଯଦୁ ସେନାର ପତାକା ଚକ୍ରଲାଞ୍ଛିତ ।

୪ । ବାମଣ୍ଡା ରାଜବଂଶ ଯଦୁବଂଶସମ୍ଭୂତ । ବାସୁଦେବ—ସମ୍ବୋଧନପଦ । ବାମଣ୍ଡାମଘବା—ବାମଣ୍ଡାର ଇନ୍ଦ୍ରସ୍ୱରୂପ । ଦୁର୍ଦ୍ଧର୍ଷ ଅନୀକିନୀର ବିଶେଷଣ ।

୫ । ସୈନ୍ଧବୀଚମୂ—ସିନ୍ଧୁଦେଶୀୟ ସେନା । ସିନ୍ଧୁଦେଶ ଘୋଡ଼ାଙ୍କ ନିମନ୍ତେ ପ୍ରସିଦ୍ଧ ଥିଲା ।

ଶିକ୍ଷିତ ସୈନ୍ଧବୀ ଘୋଡ଼ାଖୁରେ ସମୁତ୍ଥିତ-
ଧୂଳିରେ ଅନ୍ଧାର ନଭଃ, ଯହିଁ ରଣୋନ୍ମାଦେ
ଯମଚକ୍ର ପ୍ରାସେ ଭରେ ଚକ୍ର ବରଦଲି; ୧
ତୁମ୍ଭ ଯଶେ ସମୁଜ୍ଜ୍ୱଳ ଯେ ବଂଶ ଏ ଦେଶେ,
ହେ ଯଶସ୍ୱୀ ରାମଚନ୍ଦ୍ର ଭଞ୍ଜଭୂମିପତି,
ଅକ୍ଳାନ୍ତ କୌଶେୟବଂଶେ ଖଣ୍ଡାଧାଳଧାରୀ ୨
ମରୁଦେଶୁଁ, ମରୁଶ୍ଚରମୃଗେନ୍ଦ୍ର ବିକ୍ରମେ, ୩
ଅପମାନଅସହିଷ୍ଣୁ, କୋପନପ୍ରକୃତି
ଦୀପ୍ତ ହୁତଭୁକ ଯଥା, ଜଗତେ ପ୍ରସ୍ତୁତ
ନେବାକୁ ଦେବାକୁ ମଥା କଥାକେ କଥାକେ;
ବୀରଦର୍ପେ ମତ୍ସ୍ୟାଙ୍କିତକେତନ ଉଡ଼ାଇ
ଆସନ୍ତି ସମ୍ବରକୂଳୁଁ ବୈରାଟପଦାତି ୪

୧। ବରଦଲି—ବକ୍ରାକାର ଅସ୍ତ୍ରବିଶେଷ।

୨। ମୟୂରଭଞ୍ଜ ରାଜବଂଶ କୌଶେୟ ଅର୍ଥାତ୍ କୁଶବଂଶୋଦ୍ଭୂତ ଅଟନ୍ତି। ଏମାନଙ୍କର ଆଦ୍ୟସ୍ଥାନ ରାଜପୁତନା। ରାଜପୁତନାର ମରୁପ୍ରଦେଶରେ ପୂର୍ବକାଳରେ ଅନେକ ସିଂହ ଥିଲେ।

୩। ବିକ୍ରମେ—ପାଦକ୍ଷେପରେ।

୪। ବିରାଟଦେଶ ରାଜପୁତନା ଅନ୍ତର୍ଗତ ସମ୍ବରହ୍ରଦର ଅଦୂରବର୍ତ୍ତୀ। ବିରାଟ-ବାସିମାନେ ପ୍ରାଂଶୁକାୟ ବୋଲି ପ୍ରସିଦ୍ଧ ଥିଲେ। ସୈନିକକାର୍ଯ୍ୟ ନିମନ୍ତେ ଏମାନେ ବିଶେଷ ଉପଯୋଗୀ ବୋଲି ଭାରତବର୍ଷର ସର୍ବତ୍ର ଆଦୃତ ହେଉଥିଲେ।

ପ୍ରାଂଶୁତନୁ, ଭୀମଧନୁ ଝମଙ୍କ ଭୈରବେ
ସବ୍ୟକରେ, ସବ୍ୟେତରେ ଘୃଷ୍ଟରପରଶୁ ;
କରନ୍ତି ଯେ ସୁଗ୍ରନ୍ଥିତ ଲାଙ୍ଗଳର ଫାଳେ
କାଳିନ୍ଦୀର ବେନିକୂଳ ଶସ୍ୟ ଶ୍ୟାମଳିତ,
ଆସୁଛନ୍ତି ଉରସ୍ୱିଳ ଶୌରସେନୀବୀରେ ୧
ଶାଣିତ ପାଣିତ ଅସି କୌତୁକେ ଅସ୍ଫାଳି; ୨
ଚର୍ମ୍ମଣ୍ୱତୀକଙ୍କପର ଖୋପି ଶିରସ୍ତ୍ରାଣେ, ୩
କର୍କଶ, କର୍କଶ ଯେସନେ କର୍କରା ସେ ସ୍ରୋତେ,
ବିଶାଳ ଆୟସୀ ଗଦା ଧରି ଅନାୟାସେ,
ଆସୁଛନ୍ତି ମାଲବେଶେ ମାଲବଜନବାସୀ ୪
ହାବଦଧୂଳରେ ରଙ୍ଗେ ବୋଳି ବୀରତନୁ;
ଜାହ୍ନବୀଯମୁନାବେଣୀମଧ୍ୟମଣିରୂପ
ଶସ୍ୟଶାଳୀ ବିସ୍ତୃତଦେଶୁଁ ଆସୁଛନ୍ତି ସାଦୀ ୫

---

୧ । ମଥୁରା ଅଞ୍ଚଳର ଲୋକମାନେ ଶୌରସେନୀ ଆଖ୍ୟାରେ ଆଖ୍ୟାତ ହେଉଥିଲେ । ଉରସ୍ୱିଳ—ବିଶାଳବକ୍ଷା ।

୨ । ପାଣିତ—ପାଣିଦିଆ ।

୩ । ଚର୍ମ୍ମଣ୍ୱତୀ—ଚମ୍ବଲନଦୀ ।

୪ । ମାଳବ—ମାଲ୍‌ବା ।

୫ । ଦୋଆବର ପ୍ରାଚୀନନାମ ବସ୍ତ୍ରଦେଶ । ସାଦୀ—ଅଶ୍ୱବାର ।






ଦଳେ ଦଳେ ଅଶ୍ୱପୃଷ୍ଠେ, ପିତ୍ତଳବର୍ମିତ, ୧
ତୂଣୀ-ଉଚ୍ଚାବଚ ଚାଲ ଦୋଳଇ ଚରମେ,
କରେ ଖରଶାଣ ଭଲ୍ଲ ପରାହୃଦଭେଦୀ;
ସରଯୂ, ତମସା, ପୁଣି ଗୋମତୀତଟିନୀ— ୨
ତୀରଦେଶୁଁ ଆସୁଛନ୍ତି ସୂର୍ଯ୍ୟବଂଶୀ ବୀରେ
ମହୋତ୍ସାହେ, ତୋଳ ସୂର୍ଯ୍ୟଲାଞ୍ଛିତ ପତାକା,
ପୃଷ୍ଠଦେଶେ ଦୋଳେ ଫୁଲିମଣ୍ଡିତ ତୂଣୀର,
ଯମଦଂଷ୍ଟ୍ରାସହଚର ଶର ଦକ୍ଷକରେ,
ସବ୍ୟେ ଧନୁ, ଟାଣନ୍ତେ ଯା ଗୁଣ କର୍ଣ୍ଣପାଏ,
ଶତ୍ରୁସୀମନ୍ତିନୀ କର୍ଣ୍ଣୁ ବେଗେ ପଡ଼େ ଝଡ଼ି
କର୍ଣ୍ଣୋତ୍ପଳ, ତୁଟେ କରେ କଙ୍କଣ ଟଙ୍କାରେ; ୩
ମହାଖରସ୍ରୋତସ୍ୱତୀ, ପୃତଶିଞ୍ଜାମୟୀ

୧ । ବର୍ମିତ—ବର୍ମଧାରୀ ।

୨ । ସରଯୂ, ତମ୍ମସା, ଗୋମ୍ମତୀ ଅବଧରାଜ୍ୟର ନଦୀ । ତମ୍ମସାର ଆଧୁନିକ ନାମ ଟଁସ ।

୩ । ଏହି ଯୋଦ୍ଧାମାନେ ଧନୁର୍ଗୁଣ ନିଜ କର୍ଣ୍ଣ ପର୍ଯ୍ୟନ୍ତ ଆକର୍ଷଣ କଲାମାତ୍ର ଶତ୍ରୁରମଣୀମାନଙ୍କ କର୍ଣ୍ଣରୁ କର୍ଣ୍ଣୋତ୍ପଳ ଝଡ଼ିପଡ଼େ, ଏମାନଙ୍କ ଧନୁଷ୍ଟଙ୍କାରଶବ୍ଦରେ ଶତ୍ରୁରମଣୀମାନଙ୍କର କଙ୍କଣ ଭଗ୍ନ ହୁଏ ଅର୍ଥାତ୍ ସେମାନେ ବିଧବା ହୁଅନ୍ତି ।




ଗଣ୍ଡକୀର ଝର ଛାଡ଼ି ରୁଣ୍ଡୀଭୂତ ଅହି ୧
ନିର୍ମୋକନିର୍ମୁକ୍ତ ତକ୍ଷ ପ୍ରାୟେ କମ୍ପ୍ରଦ ୨
ନାଗ୍ରତଧାରଣୀ, ସୀରଲାଞ୍ଛିତ ଧ୍ୱଜିନୀ
ମୈଥିଲାଖ୍ୟ, ମହାଦକ୍ଷ ବଗ୍ରଷଦଳନେ; ୩
ମାଳେ ମାଳେ ଉଭା ସ୍ୱେହ ବଶାଳପ୍ରାନ୍ତରେ
ବନ୍ଧ୍ୟେଶ୍ୱରୀଦେବୀଭକ୍ତ ସଦା ଦ୍ୱନ୍ଦ୍ୱପ୍ରିୟ ୪
ଯୋଧବୃନ୍ଦ, ବଳପଶୁଶୋଣିତେ ପିଶୁନ
ତୀକ୍ଷ୍ଣଧାର ଖଡ୍ଗ ହସ୍ତେ, ବାଳାର୍କପ୍ରତିମ
ଶୋଭଇ ସିନ୍ଦୂରଚର୍ଚ୍ଚା ପ୍ରଶସ୍ତ ଲଲାଟେ,
ଦେବୀଙ୍କ ବାହନ ସିଂହ ଶୋଭେ ଧ୍ୱଜପଟେ,
ଜ୍ୟୋତିର୍ମୟ ସିଂହ, ଅହା, ରଶିଚକ୍ରେ ଯଥା;
ମହାଜବ ପୃଷ୍ଠ୍ୟପୃଷ୍ଠେ ଆରୋପେ ଅସ୍କନ୍ଦିତେ, ୫

୧ । ଗଣ୍ଡକୀ ମିଥିଳାରେ ପ୍ରବାହିତା । ପବିତ୍ର ଶିଳା ସକାଶ ଏହି ନଦୀ ପ୍ରସିଦ୍ଧ ।

୨ । କାତ ଛାଡ଼ିଥିବା ତକ୍ଷସାପ ପରି ଭୟଙ୍କର ।

୩ । ମୈଥିଳରାଜାଙ୍କ ପତାକା ଲଙ୍ଗଳଲାଞ୍ଛିତଥିଲା । ଏହି ହେତୁରୁ ରାଜର୍ଷି ଜନକଙ୍କର ଅପର ଆଖ୍ୟା ସୀରଧ୍ୱଜ ।

୪ । ବିନ୍ଧ୍ୟେଶ୍ୱରୀ—ମିରଜାପୁର ସହରର ନିକଟବର୍ତ୍ତୀ ସ୍ଥାନରେ ଗଙ୍ଗାତଟରେ ବିନ୍ଧ୍ୟବାସିନୀ ଦେବୀଙ୍କର ମନ୍ଦିର ପ୍ରତିଷ୍ଠିତ ।

୫ । ମହାଜବ — ବେଗଗାମୀ । ପୃଷ୍ଠ୍ୟ — ତାଜି ଘୋଡ଼ା । ଆସ୍କନ୍ଦିତ — କଦମ୍ବ

କାଳଦଣ୍ଡ ପ୍ରାଏ କୁନ୍ତ ମୁଷ୍ଟିପୀଡ଼େ ଧରି, ୧
କର୍ଣ୍ଣକୁଳତନୁ-ବୃଷକେତୁ ବଂଶଧର ୨
ଉଡ଼ାଇ ବୃଷାଙ୍କ ବାନା, ଅଙ୍ଗଦେଶସେନା; ୩
ଶ୍ୱେତମଣିଶିଳାଦ୍ରୋଣୀବାହିନୀ ନର୍ମଦା- ୪
ତୀରବନେ ଅନୁକ୍ଷଣେ ମୃଗୟାବିନୋଦୀ
ଆସନ୍ତି ଅମିତ୍ରଛେଦି ଚେଦି-ମହାବୀରେ
ମହୋଜ୍ଜ୍ୱଳମରକତଅବତଂସଧାରୀ ୫
ଘନତାଳୀବନାକୀର୍ଣ୍ଣ ଜଳଦୁର୍ଗବାସୀ, ୬

୧ । କୁନ୍ତ—ଅସ୍ତ୍ରବିଶେଷ । ମୁଷ୍ଟିପୀଡ଼େ—ଦୃଢ଼ମୁଷ୍ଟିରେ ।

୨ । ବୃଷକେତୁ—କର୍ଣ୍ଣପୁତ୍ର ।

୩ । ମୁଙ୍ଗେର ପ୍ରଭୃତି ଅଞ୍ଚଳର ନାମ ଅଙ୍ଗଦେଶ । କର୍ଣ୍ଣଙ୍କ ଉତ୍ତାରୁ ତାହାଙ୍କ କନିଷ୍ଠପୁତ୍ର ବୃଷକେତୁ ଅଙ୍ଗଦେଶରେ ରାଜପଣ କରିଥିଲେ ।

୪ । ଶ୍ୱେତମଣିଶିଳାଦ୍ରୋଣୀ—ଶ୍ୱେତବର୍ଣ୍ଣ ମାର୍ବଲପର୍ବତର ଉପତ୍ୟକା । ମଧ୍ୟଭାରତବର୍ଷରେ ଜବଲପୁରର ନିକଟବର୍ତ୍ତୀ ଭେଡ଼ାଘାଟ ନାମକ ସ୍ଥାନରେ ନର୍ମଦାର ସ୍ୱଚ୍ଛନୀଳସ୍ରୋତ ଧବଳମାର୍ବଲପ୍ରସ୍ତରର ଦ୍ରୋଣୀରେ ପ୍ରବାହିତ । ଏହି ସ୍ଥାନ ଭାରତବର୍ଷର ଗୋଟିଏ ପ୍ରଧାନ ଦୃଶ୍ୟ । ନର୍ମଦାର ସୁପ୍ରସିଦ୍ଧ ଧୂଆଁଧାର ପ୍ରପାତ ଏହାର ଅଦୂରବର୍ତ୍ତୀ ।

୫ । ଜବଲପୁର ପ୍ରଭୃତି ଚେଦିରାଜ୍ୟର ଅନ୍ତର୍ଭୂତ ଥିଲା । ମରକତଖଣ୍ଡି-ବିଶିଷ୍ଟ ପାନ୍ନାନଗରୀ ଚେଦିରାଜ୍ୟର ଅନ୍ତର୍ଗତ ଥିଲା ।

୬ । ତାଳୀବନ—ହିନ୍ତାଳବନ । ସମୁଦ୍ରତୀରବର୍ତ୍ତୀଦେଶମାନ ହିନ୍ତାଳବନାକୀର୍ଣ୍ଣ ।

ଅନ୍ୟତ୍ର କ୍ଷେପଣୀକ୍ଷେପେ ବଜ୍ରଦୃଢ଼ବପୁଃ, ୧
ଗାଙ୍ଗେୟତୁରଙ୍ଗେ ଚଳମସ୍ତବେଦେ ପହ୍ନ-
ସାବେଳ, ଘୃଷ୍ଟର ଚଳ ସ୍ବାବେଳର ଶିଖା, ୨
ସ୍କନ୍ଧେ ଥୋଇ ଆସୁଅଛି ଅମନ୍ଦବିକ୍ରମେ
ବଙ୍ଗଦେଶୀରଣରଙ୍ଗରସିକପୃତନା; ୩
ହିମାଦ୍ରିନିସ୍ୟନ୍ଦନୀରପ୍ରବାହେ ପ୍ଲାବିତ,
ଶାର୍ଦ୍ଦୂଳକ୍ଷ୍ବେଡିତପ୍ରାଂଶୁ-ତୃଣବନାକୁଳ ୪
ପୌଣ୍ଡ୍ରଦେଶୁଁ ଆସୁଅଛି ବାର୍କ୍ଷଦୁର୍ଗବାସୀ ୫

୧ । ସର୍ବଦା ଆହ୍ନଣଭଡ଼ା ହେତୁରୁ ଯେମାନଙ୍କର ପେଶୀ ସୁଦୃଢ଼ ।

୨ । ସାବେଳ—ଅସ୍ତ୍ରବିଶେଷ ।

୩ । ପୃତନା—ସେନା । ପୂର୍ବବଙ୍ଗ ଜଳାକୀର୍ଣ୍ଣ ଏହି ହେତୁରୁ ବଙ୍ଗୀୟ ସେନାକୁ ଜଳଦୁର୍ଗବାସୀ ବୋଲା ଯାଇଅଛି । କାଳିଦାସ ବଙ୍ଗୀୟ ଯୋଦ୍ଧାମାନଙ୍କୁ "ନୌସାଧନୋଦ୍ୟତାନ୍" ବିଶେଷଣ ଏହି ହେତୁରୁ ଦେଇଥିଲେ । ଓଡ଼ିଶାରେ କୁଜଙ୍ଗ, ପାରିକୁଦ ପ୍ରଭୃତି ସ୍ଥାନମାନଙ୍କୁ ଜଳଦୁର୍ଗ ବୋଲା ଯାଇ ପାରେ ।

୪ । ବ୍ୟାଘ୍ରସଙ୍କୁଳ ବୃହତ ଘାସବନପୂର୍ଣ୍ଣ ।

୫ । ପୌଣ୍ଡ୍ରଦେଶ—ହିମାଳୟର ପାଦଦେଶସ୍ଥିତ ରଜସାହି ପ୍ରଭୃତି ଅଞ୍ଚଳ । ବାର୍କ୍ଷଦୁର୍ଗ—ବୃକ୍ଷବେଷ୍ଟିତ ଦୁର୍ଗ । ବର୍ତ୍ତମାନ ସୁଦ୍ଧା ଅନେକ ରଜା ଏବଂ ଜମିଦାରମାନଙ୍କ ଗଡ଼ ନିବିଡ଼ ବାଉଁଶବନବେଷ୍ଟିତ ଦେଖାଯାଏ ।

ରଣରୁଷ୍ଟ-ଅନୀକିନୀ ଅନିବର୍ତ୍ତୀ ରଣେ, ୧
ରିପୁବରଚ୍ଛିନ୍ନକାରୀ ବଟଃଛ୍ଥଧାରଣୀ; ୨
ଆବନ୍ତ ଅୟସ୍କସେହାସନ୍ନଦ୍ଧଶରୀରେ, ୩
ଧୂପଖଣ୍ଡାଧାରୀ, ଚଣ୍ଡରିପୁଦଣ୍ଡଦାତା, ୪
ଜ୍ଵଲପିମଣ୍ଡିତଗଣ୍ଡ ଉଜ୍ଜ୍ଵଳପ୍ରଭାରେ,
ଦ୍ୱିରୁକ୍ତ କେବଳ ଯିନା ଚନ୍ଦ୍ରୋଜ୍ଜ୍ୱଳଭୂଷା
ଯାହାଙ୍କର ଚନ୍ଦ୍ରହାସବ୍ରଣାଙ୍କିତଦେହେ; ୫
ଆସୁଛନ୍ତି ନେପାଳୀଏ ମହାବୀର୍ଯ୍ୟଶାଳୀ
ଖର୍ବଦେହ, ମାତ୍ର ରଣେ ପର୍ବତ ସଦୃଶେ
ଅଟଳ, ଛଟକେ ରିପୁକଣ୍ଟକସଂହାରୀ, ୬

୧ । ରଣରୁ ଯେମାନେ ନିବୃତ୍ତ ହେବାର ନୁହନ୍ତି ।

୨ । ରିପୁବରଚ୍ଛିନ୍ନକାରୀ—ପ୍ରଧାନ ଶତ୍ରୁଚ୍ଛେଦକ ।

୩ । ଲୌହକଞ୍ଚୁକାବୃତ୍ତଦେହରେ ।

୪ । ଧୂପଖଣ୍ଡା—ଅତ୍ୟୁତ୍କୃଷ୍ଟ ଖଡ୍ଗବିଶେଷ ।

୫ । ଚନ୍ଦ୍ରହାସ—ଖଡ୍ଗ । ଉକ୍ତଳୀୟ ସୈନ୍ୟମାନଙ୍କ ଦେହରେ ଖଡ୍ଗାଘାତର ଚିହ୍ନ ଥିଲା । ତାହା ସେମାନଙ୍କର ସର୍ବୋତ୍କୃଷ୍ଟ ଭୂଷଣ । ସେମାନଙ୍କ ଦେହରେ ଆଉ ଯେଉଁ ଭୂଷଣ ଥିଲା ତାହା ଦ୍ୱିରୁକ୍ତି ମାତ୍ର ଅର୍ଥାତ୍ ନିଷ୍ପ୍ରୟୋଜନ । ଅସ୍ତ୍ରବ୍ରଣାଙ୍କଠାରୁ ବୀରମାନଙ୍କର ଉତ୍କୃଷ୍ଟତର ଭୂଷଣ ଆଉ ନାହିଁ ।

୬ । ନେପାଳର ଗୁରଖାସୈନ୍ୟ ଖର୍ବକାୟ ମାତ୍ର ଅତ୍ୟନ୍ତ ସାହସୀ ଏବଂ ରଣଦକ୍ଷ ।

କଟ୍ଟଦେଶେ ବଲମ୍ବିତ କଠାର ପିଧାନେ, ୧
ଶଙ୍ଖାମ୍ବୁଧବର୍ଣ୍ଣଶୋଭ-ପ୍ରବେଣୀଆବୃତ, ୨
ଝରୋଦ୍ଗାରଗଣ୍ଡଗିରି ଯାନ୍ତେ ମଦସ୍ରାବୀ ୩
ସଙ୍ଗେ ଦନ୍ତାବଳଘଟା ଦିଗନ୍ତନିର୍ଘୋଷୀ
ଘନ ଘଣ୍ଟାରବେ, ପୂର୍ଣ୍ଣ ଭୈରବବୃଂହିତେ; ୪
ବ୍ୟାଘ୍ରଚର୍ମ-ଅଙ୍ଗତ୍ରାଣେ ସର୍ବାଙ୍ଗ ଆବରି,
ଆସନ୍ତି ଛଡ଼ିଦ୍ୟେ କର୍ମନାଶାତୀରବାସୀ,
ବକ୍ରବପୁ, କଷ୍ଟସହ, ନିଷ୍ଠୁର ଯେସନେ
ନିଷ୍ଠୁର ଅକର୍ମଣିଳା କର୍ମନାଶାସ୍ରୋତେ, ୫
ହସ୍ତେ ଶାର୍ଙ୍ଗଧନୁ, ପୃଷ୍ଠେ ନିଷଙ୍ଗେ ପୂରିତ
ଅଗତିମାରଣପଟୁ ଆଶୁଗବାହୁଳ;
ଆସୁଛନ୍ତି ଭିଲ୍ଲସେନା ଏକମୂନାଧାରୀ, ୬

୧। ପିଧାନ—କୋଷ; କଠାର—ଅସ୍ତ୍ରବଶେଷ।
୨। ପ୍ରବେଣୀ—ହସ୍ତିର ପୃଷ୍ଠାସ୍ତରଣ।
୩। ଗଣ୍ଡଗିରି—କ୍ଷୁଦ୍ରଶୈଳ।
୪। ବୃଂହିତ—ହସ୍ତିଗର୍ଜନ।
୫। କର୍ମନାଶା ନଦୀ ବେହାରଅନ୍ତର୍ଗତ ଭୋଜପୁରର ନିକଟବର୍ତ୍ତୀ। ଭୋଜପୁରବାସିଙ୍କ ପ୍ରକୃତି ପ୍ରାବଚନିକ ପ୍ରସିଦ୍ଧି ଲାଭ କରିଅଛି।
୬। ଏକମୂନା—ଶୂଳାକାର ଅସ୍ତ୍ରବଶେଷ।

ବନ୍ଧ୍ୟଗିରିବନଗଜ-ମୃଗଯୂଥକୌତୁକୀ,
ଅଷ୍ଟନାଭ, ଚୂଡ଼ାମାଳେ ମଣ୍ଡିତବପ୍ରସ୍ଥ,
ମଧୂକମଦିରାପାନେ ଭିଲ୍ଲୌଘ ସ୍ୱରବେ, ୧
ଘନ ଘନ ଝଟିତେ ବାଜେ ଘର୍ଘରିକା; ୨
ସ୍ଥିତି ନାହିଁ ପେଷିବାକୁ ଏ ମହାମେଳନେ
କଜ କଚ୍ଛ ପତାଙ୍କିନୀ ବର୍ଣ୍ଣବିଜୟିନୀ
ଉଜ୍ଜୟିନୀ, ମହାକାଳପାଳିତା ନଗରୀ,
ନିରତେ ଶୀତଳ ଶିପ୍ରା ତରଙ୍ଗପବନେ; ୩
ନର୍ମଦାମେଖଳା ମହାପୁରୀ ମାହିଷ୍ମତୀ,
କାର୍ତ୍ତବୀର୍ଯ୍ୟବୀର୍ଯ୍ୟେ ଯାହା ବନ୍ଦିତ ତ୍ରିଲୋକେ; ୪
ବେତ୍ରବତୀଧୌତପୁରୀ ବଦିଶାଲକ୍ଷଣା; ୫

୧ । ମଧୂକମଦିରା—ମହୁଲମଦ ।

୨ । ଘର୍ଘରିକା—କ୍ଷୁଦ୍ରଘଣ୍ଟି ।

୩ । ଉଜ୍ଜୟିନୀର ପାଦଦେଶରେ ଶିପ୍ରା ପ୍ରବାହିତା । ଭଗବାନ୍ ମହାକାଳ ମହାଦେବଙ୍କ ମନ୍ଦିର ସକାଶ_ଉଜ୍ଜୟିନୀ ଭାରତବର୍ଷର ପ୍ରଧାନତୀର୍ଥ ମଧ୍ୟରେ ପରିଗଣିତ ।

୪ । କାର୍ତ୍ତବୀର୍ଯ୍ୟଙ୍କ ରାଜଧାନୀ ମାହିଷ୍ମତୀ ନର୍ମଦାତଟରେ ଅବସ୍ଥିତ ଥିଲା ।

୫ । ବଦିଶ ଲକ୍ଷଣା—ବିଦିଶାନାମ୍ନୀ । ବଦିଶାର ଆଧୁନିକ ନାମ ଭିଲସା । ଏହା ବେତ୍ରବତୀ ଅଥବା ବେତୁଆ ତୀରରେ ଅବସ୍ଥିତ ।

ହେଉଛନ୍ତି ଏହିମତେ ବୃନ୍ଦ ସେ ପ୍ରାନ୍ତରେ
କେତେ ଦେଖୁଁ କେତେ ଛାଡି କଳିବ କେ ତାହା ?
କେ ଗଣିବ ନଭେ ତାରା, ଲହରୀ ଅର୍ଣ୍ଣବେ,
ଅଥବା ଚଳିଲାନୀଳବକ୍ଷେ ହଂସାବଳୀ ? ୧
କୃଷ୍ଣା ସ୍ୱୟମ୍ବରେ ଯଥା ଲକ୍ଷ୍ୟଭେଦକାଳେ
ପଞ୍ଚାଳେ, ଅଥବା ଇନ୍ଦ୍ରପ୍ରସ୍ଥେ ରାଜସୂୟେ,
କୁରୁକ୍ଷେତ୍ରଯୁଦ୍ଧୋଦ୍ୟୋଗେ ଅବା ମତ୍ସ୍ୟଦେଶେ,
ଅବା ଯଥା ଅଶ୍ୱମେଧେ ହସ୍ତିନାତୋରଣେ,
ଦେଖିଥିଲେ ବୃନ୍ଦ ଆଗେ ପାଣ୍ଡୁକୁଳମଣି
ଅସଂଖ୍ୟବାହିନୀ, ପୁଣି ଦୃଶ୍ୟ ଯେହ୍ନିପରି,
ଦେଖିଲେ ସେ ଆଜି ବସି ଅନଳପ୍ରସାଦେ
ସହ୍ୟଶୈଳେ, ତହୁଁ ତାଙ୍କୁ ଏକ ଏକ କରି
ଚିହ୍ନାଇ ଜ୍ୱଳନଦେବ ଅଙ୍ଗୁଳି ନିର୍ଦ୍ଦେଶି,
ବୋଇଲେ "ଦେଖୁଛ ଯାହା, ଘଟିବ ଭାରତେ,
ବହୁଶତବର୍ଷ ଗତେ ଏହି ନବଯୁଗେ,
କାଳପାପେ ବୀର୍ଯ୍ୟହୀନ ହେଲେ ଆର୍ଯ୍ୟଜାତି,

୧ । ଶରଦାରମ୍ଭରେ ଚିଲ୍କାର ନୀଳବକ୍ଷ ବନହଂସରେ ଧବଳିତ ହୋଇଯାଏ ।

ଆରମ୍ଭିବେ ମହାଯାଗ ଅର୍ବୁଦପର୍ବତେ ୧
ଭାରତର ହିତକାମେ ଗୁରୁ ମହାତପା
ବଶିଷ୍ଠ, କୃଷ୍ଣାଙ୍କ ଶିଷ୍ୟ, ପରାଶର, ଭୃଗୁ,
ନିଜ ତେଜଃପୁଞ୍ଜଧାମ୍ନି ମଧ୍ୟେ ଅବତରି, ୨
ପ୍ରତିହାର, ପ୍ରମାରଙ୍କ, ରାଠୋର, ଚୌହାନ-
ନାମଧାରୀ, କୃଷ୍ଣ ଗୁରୁ ଯଜ୍ଞମନ୍ତ୍ରାବାରେ
ଜନ୍ମଭୂମି ଲାଗି ଝାସ ଦେବେ ଯଜ୍ଞାନଳେ
ମହାନନ୍ଦେ, ମହାମନା ମୁନିଙ୍କ ଆଦେଶେ,
ବୀର ବିନୁ ଆନ କେହି ପାରେ କି ମୁରୁଛି,
ଜୀବନର ବୃତ୍ତଳଗି, ଜୀବନର ମାୟା ?
ଜନ୍ମଭୂମିଟେକିରଖାଶକତିକି କେବେ
ଧରଇ, କେହୁ ପାଣ୍ଡୁ ଜାଣି, ପ୍ରାଣରଙ୍କ ପ୍ରାଣୀ ?
ଝାସ ଦେଇ ସେ ଅନଳେ, ସେହି ଗୁରୁ ବାରେ

୧ । ଆବୁ ପର୍ବତ ଆରାବଳୀର ପ୍ରଧାନ ଶୃଙ୍ଗ । କମ୍ବଦନ୍ତୀ ଅଛି, ଯେ ଭାରତବର୍ଷରୁ ଅଧଃପତନର ସମ୍ଭାବନା ଦେଖି ବଶିଷ୍ଠ, ବିଶ୍ୱାମିତ୍ର, ପରାଶର ଏବଂ ଭୃଗୁମୁନି ଅର୍ବୁଦପର୍ବତ ଶୃଙ୍ଗରେ ଯାଗାରମ୍ଭ କଲେ । ସେହି ଯାଗାନଳରୁ ଚାରିମହାବୀର ଆବିର୍ଭୂତ ହେଲେ । ଏହି ବୀରଚତୁଷ୍ଟୟର ସାଧାରଣ ନାମ 'ଅଗ୍ନିକୁଳ' ଅଟେ ।

୨ । ସପ୍ତର୍ଷିରୂପୈସ୍ତେଜୋଧିର୍ମସ୍ତୈର୍ଲୋକୈରୁ ।

ଜଳଦପ୍ରଭ ଯଥା ପୁଣି ବାହାରନ୍ତେ ଯନ୍ତୁ,
ପ୍ରଦୀପ୍ତକବଚୀ ଖଡ୍‌ଗୀ ଧୃଷ୍ଟଦ୍ୟୁମ୍ନ ପଛେ; ୧
ମୋ ଶିଖାରୁ ଜାତ ଯେଣୁ କ୍ଷେତ୍ରେ ଏହି ବୀରେ
ବୋଲାଇବେ ଭବେ ଯନ୍ତୁ "ଅଗ୍ନିକୁଳ" ନାମେ,
ଯଥା ନାମେ କର୍ମେ ତଥା ତେଜଃପୁଞ୍ଜରୂପୀ;
ଶୋଭିବ ଏ ଦେଶ ଏହି ଗୃହ ମହାବୀରେ,
ଦନ୍ତୁଜଦାରଣଦନ୍ତେ ସୁରଗଜ ଯଥା ୨
ଐରାବତ, ଗୃହଭୂଷେ ଅବା ଦନ୍ତୁଜାର, ୩
ଅବା ସୁରବାଳାଙ୍କର କ୍ରୀଡ଼ାଭିପର୍ଯ୍ୟଙ୍କିକା
ଷୁରାରୂପୀ ଭଦ୍ରପଦ ତାରାଚତୁଷ୍ଟୟେ; ୪
ଏହି ଯେ ଦେଖୁଛ, ବୀର ଅର୍ଯ୍ୟବରୂଥିନୀ ୫

୧ । ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନ ଦୀପ୍ତିମାନ୍ କବଚ ଏବଂ ଖଡ୍‌ଗ ଧାରଣ କରି ଯଜ୍ଞକୁଣ୍ଡରୁ ବାହାରିଥିବାର ପ୍ରସଙ୍ଗ ମହାଭାରତରେ ଅନୁସନ୍ଧେୟ ।

୨ । ଐରାବତର ଚାରିଦନ୍ତ ଥିବାର ପ୍ରସିଦ୍ଧି ଅଛି ।

୩ । ଦନ୍ତୁଜାର ଅର୍ଥାତ୍ ବସ୍ତୁ ଯେପରି ଚାରିଭୁଜଦ୍ୱାରା ପରିଶୋଭିତ ।

୪ । ଭଦ୍ରପଦ ତାରାଚତୁଷ୍ଟୟ ପର୍ଯ୍ୟଙ୍କାକାର ।

୫ । ବରୂଥିନୀ—ସେନା ।

ସମବେତ ନାନାଦେଶ ଦିଗନ୍ତରୁ ଆସି,
ଜନ୍ମିବେ ସରବେ ଏହି ଶୁଦ୍ଧ ବୀରକୁଳେ, ୧
ଭାରତର ନାନାରାଜ୍ୟେ ରାଜଦଣ୍ଡ ଶୁଭ୍ର,
ଏ ବୀରଙ୍କ ବଂଶଧରେ ରକ୍ଷିବେ ଯତନେ
ଯବନରାହୁର ଗ୍ରାସୁଁ ଭାରତ-ଚନ୍ଦ୍ରମା
ବହୁକାଳ, ମାତ୍ର ତାହା ନ ସହିବ କଳି,
କଳିର ପ୍ରେରଣେ 'ଈର୍ଷା' ଅଲକ୍ଷିତେ ପଶି
ଭିଆଇବ ପୁଣି କଳି ଭୂପାଳେ ଭପାଳେ;
ଜନ୍ମିବେ ଚୌହାନକୁଳେ ଏହି ଦିଲ୍ଲିପୁରେ
କ୍ଷୀରୋଦୁଁ ପୀୟୂଷ ପ୍ରାୟେ ପୃଥୁ ପୃଥୁଯଶା, ୨
ସଂଗ୍ରାମେ ଅପ୍ରତିରଥ ଯଥା ପାର୍ଥ ରଥୀ; ୩
ଜନ୍ମିବ ରାଠୋରକୁଳେ ସେ କୁଳପାଂଶୁଳ
କ୍ଷୀରୋଦୁଁ ଗରଳ ପ୍ରାୟେ, ମୋ ଶିଖାରୁ ଅବା।

୧। ଆର୍ଯ୍ୟାବର୍ତ୍ତର ଅଧିକାଂଶ ରାଜନ୍ୟବର୍ଗ ଏହି ବୀର ନାମରେ ଆଖ୍ୟାତ। ଓଡ଼ିଶାର ଅଧିକାଂଶ ରାଜବଂଶ ମଧ୍ୟ ଏହି ବଂଶସମ୍ଭୂତ।

୨। ପୃଥୁଯଶା—ମହାଯଶସ୍ୱୀ।

୩। ଅପ୍ରତିରଥ—ଯାହାଙ୍କର ଉପଯୁକ୍ତ ପ୍ରତିଯୋଦ୍ଧା ନାହିଁ। ଅଦ୍ୱିତୀୟ।

ସମଳ ଅଳଙ୍କୁ ପ୍ରାପ୍ତେ, କାନ୍ୟକୁବ୍ଜପତି ୧
ମନ୍ଦମତି ଜୟଚନ୍ଦ୍ର ଆର୍ଯ୍ୟଭୂମିଦ୍ରୋହୀ;
ପୃଥୁଙ୍କ ବହ୍ନମୟ ଯଶଃ ଶୁଣି ଏ ଦୁର୍ମ୍ମତି
ଅନୁକ୍ଷଣେ ହେବ ଘାର, ସ୍ୱଭାବେ ଭଗାରୀ
ଗୁଣଙ୍କର, କର୍ଣ୍ଣଶୂଳ ମଣିବ ସେ ସ୍ତୁତି;
ମାତ୍ର କର୍ଣ୍ଣାମୃତରୂପେ ପଶିବ ଯେ ବାଣୀ
ବୀରାଙ୍ଗନା ବୀରୋତ୍ସଙ୍ଗସିଂହାସନାର୍ଥିନୀ ୨
କାନ୍ୟକୁବ୍ଜେମାମଣି ସଂଯୁକ୍ତାଶ୍ରବଣେ, ୩
ସଂଯୁକ୍ତା, ସୁନ୍ଦରୀପଣେ ଅତୁଳା ଭୂତଳେ,
ରାଠୋରକୁଳଙ୍କ ଜୟଚନ୍ଦ୍ରର ଔରସେ
ପ୍ରସୂତା, ପଙ୍କିଳସରୁ ଯଥା ପଙ୍କଜିନୀ;

୧ । କାନ୍ୟକୁବ୍ଜ—ଆଧୁନିକ କନୋଜ । ଜୟଚନ୍ଦ୍ର ପୃଥୁଙ୍କ ଶ୍ୱଶୁର ଥିଲେ । ପୃଥୁଙ୍କ ଯଶରେ ଈର୍ଷ୍ୟାନ୍ୱିତ ହୋଇ ତାହାଙ୍କୁ ଦମନ କରିବା ସକାଶ ସେ ସର୍ବପ୍ରଥମେ ବୈଦେଶିକମାନଙ୍କର ସାହାଯ୍ୟ ଲୋଡିଥିଲେ ।

୨ । ବୀରକ୍ରୋଡ଼ରୂପ ସିଂହାସନପ୍ରାର୍ଥିନୀ । ବୀରବନିତା ହେବା ସକାଶ ଇଚ୍ଛୁକ ।

୩ । ରାଠୋରବଂଶଜ ଜୟଚନ୍ଦ୍ରଙ୍କ କନ୍ୟା ସଂଯୁକ୍ତାର ସ୍ୱୟମ୍ବର ଭାରତଇତିହାସର ଗୋଟିଏ ପ୍ରଧାନ ଘଟନା । ଭାରତବର୍ଷର ସ୍ୱାଧୀନତା ଲୋପ ଏହି ଘଟନାର ଗୌଣଫଳ ଅଟେ ।

ସୁନ୍ଦରୀମୋହନମନ୍ତ୍ର ଜୁନ୍ତେ କେଉଁ କାଳେ,
କେଉଁ ଦେଶେ, କେ ବୀରେନ୍ଦ୍ର, ବୀରଯଶଗାଥା ?
ପୃଥୁଙ୍କ ସେ ଯଶଗାଥା ଜାଳିବ ଯେତିକି
କ୍ରୋଧ ପିତୃହୃଦେ, ପ୍ରେମ ସେତିକି ସେ ପୁଣି
ଜାଳିଦେବ ସମକାଳେ ଦୁହିତାହୃଦୟେ;
ଛଳସୂୟଯଜ୍ଞେ ହେମାସ୍ୱୟମ୍ବରବ୍ୟ
ଭିଅଇବ ଜୟଚନ୍ଦ୍ର କାନ୍ୟକୁବ୍ଜପୁରେ,
ଲେଖ ପାଇ ଭାରତର ଦିଗଦିଗନ୍ତରୁ
ଆସିବେ ସେ ରାଜସୂୟେ ରାଜନ୍ୟମଣ୍ଡଳୀ,
ମାତ୍ର ନ ଆସିବେ ପୃଥୁ; ପ୍ରତିନିଧିରୂପେ
ପୃଥୁଙ୍କର ପ୍ରତିରୂପ ଗଢାଇ କାଞ୍ଚନେ
ଥୁଅଇବ ଜୟଚନ୍ଦ୍ର ରାଜସଭାତଳେ;
ଉପେକ୍ଷି ସେ ସ୍ୱୟମ୍ବରେ ପିତୃବଚସ୍ୱାରୀ
ନୃପକୁଳେ, ଉପେକ୍ଷି ସେ ପିତାର ଭ୍ରୂକୁଟି,
ସେହି ପ୍ରତିମାର ଗଳେ ଦେବେ ବରମାଳା
ସଂଯୁକ୍ତା ରାଠୋରପଦରେ ମଞ୍ଜୁସରୋଜିନୀ

ଦହିଲ ଚୌହାନ-ରବିପ୍ରେମେ ଶୁଦ୍ଧ ହୃଦି; ୧
ମନସ୍ୱିନୀ ବାଳାର ଏ ବିଷମ ସାହସ
ଦେଖି ହେବେ ସମବେତ ରାଜନ୍ୟ ଚକିତ,
ଚମକେ ଚମକ ପୁଣି ଭୁଆଇବ ରଙ୍ଗି
ପୃଥ୍ୱୀଙ୍କ ସଂଗ୍ରାମଶିଙ୍ଗା ଘୋଷି ବଜ୍ରଘୋଷେ
ଅଦୂରେ, ସହସା ସେହି ସ୍ୱୟମ୍ବରସ୍ଥଳ
କମ୍ପାଇବ ଅଶ୍ୱବାର-ଅଶ୍ୱଖୁରଘାତୁ, ୨
ହେମବର୍ମ୍ମାବୃତବପୁ ବରାଶ୍ୱବାହନେ ୩
କୃପାଣଦ୍ୱିତୀୟ ପୃଥ୍ୱୀ, ରକ୍ଷିଦଳ ଭେଦି, ୪
ଚମକେ ଝଲକା ପ୍ରାୟେ ରାଜାଙ୍କ ସମ୍ମୁଖେ,
ଉଲ୍କାବେଗେ ଆସି ବୀର୍ଯ୍ୟଶୁଲ୍କା ରୂପସୀଙ୍କ ୫

୧ । ଚୌହାନରବି—ପୃଥ୍ୱୀ । ସଂଯୁକ୍ତା ପୃଥ୍ୱୀଙ୍କର ସୁବର୍ଣ୍ଣପ୍ରତିମା ଗଳଦେଶ-ରେ ବରମାଲ୍ୟ ଦେଇଥିବାର କଥା ଇତିହାସରେ ପ୍ରସିଦ୍ଧ ।

୨ । ଅଶ୍ୱବାର — ଅସ୍‌ବାର ।

୩ । ବରାଶ୍ୱ—ଉତ୍କୃଷ୍ଟ ଘୋଡ଼ା ।

୪ । କୃପାଣଦ୍ୱିତୀୟ – ଅସି ଯାହାର ଏକମାତ୍ର ସଙ୍ଗୀ ।

୫ । ବୀର୍ଯ୍ୟଶୁଲ୍କା ରୂପସୀ—କେବଳ ବୀର୍ଯ୍ୟରୂପ ଶୁଳ୍କପ୍ରଦାନଦ୍ୱାରା ଯେଉଁ ସୁନ୍ଦରୀ ଲଭ୍ୟା । ବୀରବ୍ୟତୀତ ଅନ୍ୟର ଅଲଭ୍ୟା ।

ଅନୁକୂଳବଳାହ୍ଲାରେ ନେଇଯିବେ ହର
ସ୍ତମ୍ଭିତଙ୍କୁ, ସୁଭଦ୍ରାଙ୍କୁ ଯେସନେ ଫାଲ୍ଗୁନୀ, ୧
ଯଥା ମେଘାକର୍ଷୀ ମହାଚଣ୍ଡପକ୍ଷବେଗେ ୨
ହେମାଙ୍ଗ ପକ୍ଷୀନ୍ଦ୍ର ବଳେ ହରଲେ ଅମୃତ
ସୁରେନ୍ଦ୍ର ରକ୍ଷିତ-ଶଶୀମଣ୍ଡଳୁଁ ଯେପନେ;
ପୃଥୁର ଏ ବୀରଯଶଃ କ୍ଷାର ପ୍ରାପ୍ତେ ଘଟେ
ଛାଳଦେବ ଶେଷାନଳ ଜୟଚନ୍ଦ୍ରହୃଦେ,
ପତ୍ତଣାମପ୍ରତି ଅନ୍ଧ ବୈରନିର୍ଯ୍ୟାତନେ ୩
ହୃଷ୍ଟମତି, ଛାମାତାର କଥନ ମନାସି
ଶରଣାର୍ଥୀ ହେବ ଯାଇ ଯବନର ପଦେ;
ବନ୍ଦମା ଯବନପତି ଅର୍ଯ୍ୟନିର୍ଯ୍ୟାତନୁଁ

୧ । ଅର୍ଜ୍ଜୁନକର୍ତ୍ତୃକ ସୁଭଦ୍ରାହରଣ ପ୍ରସଙ୍ଗ ମହାଭାରତରେ ଅନୁଦ୍ଧେୟ ।

୨ । ପ୍ରଚଣ୍ଡପକ୍ଷବେଗଦ୍ୱାରା ମେଘକୁ ଯେ ଆକର୍ଷଣ କରେ ।

୩ । ଶତ୍ରୁହସ୍ତରେ ଦାଉ ସାଧିବାକୁ ଯାଇ ପରିଣାମରେ ଯେ ନିଜର ଏବଂ ସ୍ୱଦେଶର ସର୍ବନାଶ ହେବ ସେ ବିଷୟରେ ଅନ୍ଧ ।

ଆର୍ଯ୍ୟୋଦ୍ଧାରବ୍ରତ ଧରି ପଶିବ ଏ ଦେଶେ
ସ୍ୱଦଳେ, ଯେ ଦଳେ ପୁଣି ଆର୍ଯ୍ୟକୁଳାଙ୍ଗାରେ
ମିଶାଇବେ ନିଜ ସେନା ଆର୍ଯ୍ୟଧ୍ୱଂସକାରୀ;
ପୃଥ୍ୱୀଙ୍କ ଭଗିନୀପତି ଅଜ୍ମୀରପତି ୧
ଅମର୍ଷୀ, ଅମିତତେଜା, ପରପୁରଞ୍ଜୟୀ, ୨
ପୃଥ୍ୱୀଙ୍କ ସହାୟ ହୋଇ ଯୁଝିବେ ସଂଗ୍ରାମେ
ତଡ଼ିବେ ଅରାତିସେନା ବୃହତ ଘରୁଁ
ବେନି ଆର୍ଯ୍ୟବୀରେ ଆର୍ଯ୍ୟଗୌରବର କେତୁ,

୧ । ଏହି ସମୟର ବୀରମାନଙ୍କ ମଧ୍ୟରେ ଦିଲ୍ଲୀପତି ପୃଥ୍ୱୀ ପ୍ରଥମସ୍ଥାନୀୟ ଏବଂ ଆଜମିରପତି ଅମର୍ଷୀ ଦ୍ୱିତୀୟସ୍ଥାନୀୟ । ଭାରତବର୍ଷର ସ୍ୱାଧୀନତା ରକ୍ଷା ସକାଶେ ଏହି ଦୁଇ ବୀର ଜୀବନୋତ୍ସର୍ଗ କରି ମର୍ତ୍ତ୍ୟ-ଅମରତା ଲାଭ କରିଅଛନ୍ତି । ରାଜପୁତନାର; ମହାକବି ଚାନ୍ଦଙ୍କ ଲେଖନୀ ପୃଥ୍ୱୀଙ୍କ ପ୍ରତିଷ୍ଠା ଅବିନଶ୍ୱର କରି ରଖିଅଛି ।

୨ । ପରପୁରଞ୍ଜୟୀ—ଶତ୍ରୁନଗରଜେତା ।

ତେଜସ୍ୱୀ ଅଗ୍ରରେ ନତମସ୍ତକ ଅରାତି
ପୃଥୁପାଦେ ପ୍ରାଣଭିକ୍ଷା କରେ କରଯୋଡ଼େ
ପଳାଇବ ନିଜ ଦେଶେ ଦଳବଳସହ;
ଦଣ୍ଡଯୋଗ୍ୟସ୍ଥଳେ କ୍ଷମା ଆର୍ଯ୍ୟଧର୍ମନୀତି,
ତେଣୁ ଦସ୍ୟୁସେନା ଆର୍ଯ୍ୟଧୁରନ୍ଧର ପୃଥୁ
ଅରାତି ବିପନ୍ନ ଦେଖି ଅର୍ପିଲେ କ୍ଷମା,
ମାତ୍ର ଅସ୍ତ୍ରେତ୍ରାସ ବିନା କ୍ଷମା ଅକ୍ଷମଜନେ ! ୧
ଅକ୍ଷମଜନେ ଏହି କ୍ଷମା ପୃଥୁପ୍ରତି ତେଣୁ
ପରିଣାମେ ହେବ ମହା ଅନର୍ଥର ହେତୁ ,
ଭୋଗଲୁଣ୍ଠାବଶେ, ରତ ପରସ୍ୱହରଣେ
ଯବନନୃପତି ବେଗେ ଭାରତୁଁ ପଳାଇ,
ନ ସ୍ୱପନେ, ନ ଜାଗ୍ରତେ, ଧ୍ୟାୟି ଅବିରତେ
ଭାରତର ଏହି ଶସ୍ୟଶ୍ୟାମଳ ବସୁମତୀ, ୨
ପୁଣି ପ୍ରବେଶର ଆଶେ ରହିଥିବ ଠାବ;
ଦୂତ ପ୍ରେଷି ଜୟଚନ୍ଦ୍ର ଆଣିବ ଆହ୍ୱାନ

୧ । ଦୁଷ୍ଟଙ୍କୁ କ୍ଷମା ନିଜର ସର୍ବନାଶର ନାମାନ୍ତର ମାତ୍ର ।
୨ । ଶସ୍ୟଶ୍ୟାମଳେ—ଶସ୍ୟ ଯୋଗୁଁ ଶ୍ୟାମବର୍ଣ୍ଣୀ, ଶସ୍ୟଶୋଭିତା ।

ପୁଣି ଏ ଭାରତେ ତାଙ୍କୁ, ସର୍ବନାଶ ମନାସି
ଜାମାତାର, ଆତ୍ମନାଶ ଅଧିବାସରୂପ; ୧
ସାମାନ୍ୟଶତ୍ରୁର ଏହି ଅଭିଯାନ-ରବେ ୨
ଭାରତର ନାନାଦେଶୁଁ ଆସିବେ କ୍ଷତ୍ରିୟେ
ଦିଲ୍ଲୀପୁରେ, ଦିଲ୍ଲୀପତି-ଆମନ୍ତ୍ରଣ ପାଇ,
ସେ ଭବିଷ୍ୟ ଦୃଶ୍ୟ ଏବେ ଦିବ୍ୟାଞ୍ଜନଯୋଗେ
ଦିଶୁଛି ତୁମ୍ଭର ନେତ୍ରେ ବର୍ତ୍ତମାନ ମତି ।" ୩

ଉତ୍ତରିଲେ ସବିସ୍ମୟେ ପାଣ୍ଡୁଚୂଡ଼ାମଣି
"ଶତଭ୍ରାତ ବନ୍ଧୁ, ପଞ୍ଚପାଣ୍ଡବ ସହିତେ
ଥିଲେହେଁ ବିବାଦେ ରତ, ଦେଶବୈରୀହସ୍ତ
ଯୁଝୁଥିଲୁଁ ଅମ୍ଭେ ହୋଇ ପଞ୍ଚୋତ୍ତରଶତ;

୧ । ଯବନପତିଙ୍କ ଜୟଚନ୍ଦ୍ରର ଆକ୍ରମଣ ତାହାଙ୍କ ନିଜର ସର୍ବନାଶର ଅଧିବାସସ୍ୱରୂପ ହୋଇଥିଲା । ପ୍ରଥମେ ପୃଥ୍ୱୀ ନିହତ ହେଲେ ସତ୍ୟ, ମାତ୍ର ଶେଷକୁ ସେହି ଜୟଚନ୍ଦ୍ର ଯବନପତିଙ୍କ ହସ୍ତରେ ଉତ୍ପୀଡ଼ିତ ଏବ ଲାଞ୍ଛିତ ହୋଇ ଗଙ୍ଗାରେ ଝାସ ଦେଇ ଉତ୍କଟ ପାପର ଉତ୍କଟ ପ୍ରାୟଶ୍ଚିତ୍ତ କଲେ ।

୨ । ସାମାନ୍ୟଶତ୍ରୁ—ସମସ୍ତଙ୍କ ଶତ୍ରୁ । ଅଭିଯାନ—ଦେଶଜୟ ସକାଶ ଯୁଦ୍ଧଯାତ୍ରା ।

୩ । ବର୍ତ୍ତମାନ ମତ—ପ୍ରତ୍ୟକ୍ଷ ପର ।

ଏହି ନୀତି ଅନୁସାର, ସର୍ବେ ଏକମେଳେ
ଗନ୍ଧର୍ବବାହିନୀ ସଙ୍ଗେ ଯୁଝି ବନବାସେ,
ଉଦ୍ଧରିଲେ ଅରହସ୍ତୁଁ ହେଲେ ସୁଯୋଧନେ; ୧
ଅନ୍ତରେ ଜର୍ଜରଭାବ କରନ୍ତର ବହି,
ସଂହତ ମହିଷଶୃଙ୍ଗ ଶତ୍ରୁ ଭେଦେ ଯଥା, ୨

୧ । ପାଣ୍ଡବମାନେ କୌରବମାନଙ୍କ ଦୁରଭିସନ୍ଧିରେ ବନବାସର ଘୋର କଷ୍ଟ ଭୋଗ କରୁଥିଲେ । ଦୁରନ୍ତ କୌରବମାନେ ନିଜର ସୌଭାଗ୍ୟ ଦେଖାଇ ପାଣ୍ଡବମାନଙ୍କୁ ଅଧିକତର ମନଃପୀଡ଼ା ଦେବା ସକାଶେ ସେହି ବନକୁ ଆସିଲେ । ଏମନ୍ତ ସମୟରେ ଗନ୍ଧର୍ବମାନଙ୍କ ସହିତ କୌରବମାନଙ୍କର ହଠାତ୍ ଯୁଦ୍ଧ ହେବାରୁ କୁରୁରାଜ ଦୁର୍ଯ୍ୟୋଧନ ସେମାନଙ୍କ ହସ୍ତରେ ବନ୍ଦୀ ହେଲେ । ଯୁଧିଷ୍ଠିରଙ୍କ ସମ୍ମୁଖରେ ଏହି ବାର୍ତ୍ତା ପ୍ରବେଶ ହେବାରୁ ସେ ଦୁର୍ଯୋଧନଙ୍କୁ ଗନ୍ଧର୍ବମାନଙ୍କ ହସ୍ତରୁ ମୁକ୍ତ କରିବା ସକାଶେ ଅର୍ଜ୍ଜୁନଙ୍କୁ ଆଦେଶ ଦେଲେ । ଭୀମ ପ୍ରଭୃତି ଯୁଧିଷ୍ଠିରଙ୍କ ଏହି କାର୍ଯ୍ୟରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପ୍ରତିବାଦ କରିବାରୁ ଯୁଧିଷ୍ଠିର କହିଲେ "ଆପଣା ମଧ୍ୟରେ କଳହ ହେଲେ ଆମ୍ଭେମାନେ ପାଞ୍ଚଭାଇ ଏବଂ କୌରବମାନେ ୧୦୦ ଭାଇ, ମାତ୍ର ବୈଦେଶିକ ସହିତ କଳହ ହେଲେ ଆମ୍ଭେମାନେ ୧୦୫ ଭାଇ । ଅପରିଣାମଦର୍ଶୀ ଆର୍ଯ୍ୟମାନେ ଏହି ମହାବାକ୍ୟର ମର୍ମ୍ମ ବୁଝି ନ ପାରିବାରୁ ଭାରତବର୍ଷର ସର୍ବନାଶ ହେଲା ।

୨ । "ମହିଷଶିଙ୍ଗ ଫଟା, ଯୁଝିବା ବେଳକୁ ଗୋଟା" ଏ ପ୍ରବଚନ ଓଡ଼ିଶାରେ ସର୍ବତ୍ର ପ୍ରଚଳିତ । ସଂହତ—ଅଭିନ୍ନ ।

ସାମାନ୍ୟବିପଦେ ଗୃହବିଗ୍ରହ ବହ୍ନର ୧
ଯୁଝନ୍ତି ଯେସନ ଆର୍ଯ୍ୟେ ଦେଶବୈରୀ ସଙ୍ଗ,
ଆର୍ଯ୍ୟର ଏ ଚିରନୀତି ହିନ୍ଦୁର କି ସରେ,
ବାଲୁକାରଙ୍କୁର ଧର୍ମ ଭଜି କର୍ମଦୋଷେ, ୨
ଏହିରୂପେ ଅର୍ଯ୍ୟେ, ଅହୋ, ଯିବେ ରସାତଳେ ?"

---

୧ । ସାମାନ୍ୟ ବିପଦ—ସାଧାରଣ ବିପଦ । ଗୃହବିଗ୍ରହ—ଆପଣା ମଧ୍ୟରେ କଳହ ।

୨ । ବାଲୁକାରଙ୍କୁର ଧର୍ମ—ସଂହତିର ସମ୍ପୂର୍ଣ୍ଣ ଅଭାବ ।

## ସପ୍ତମ ସର୍ଗ ।

---

ଅଗ୍ନି ସ୍ୱର୍ଗେ ସନ୍ଧ୍ୟଶୈଳେ ନବାଞ୍ଚନେ ବସି
କହନ୍ତେ ଏସନ ରାଜା, ଫିଟିଲା ସହସା
ଇନ୍ଦ୍ରଧନୁତୋଷ ଦିବ୍ୟତୋରଣ ଅଗ୍ରତେ
ବଜ୍ରନାଦେ, ସିଂହନାଦେ କମ୍ପାଇ ମେଦିନୀ
ବାହାରିଲେ ଦଳେ ଦଳେ ସେ ତୋରଣମୁଖୁଁ
ଅସଂଖ୍ୟ ପଦାତି, ସାଦୀ, ଅଧୋରଣ, ରଥୀ, ୧
ଭାଗୀରଥୀ ଭର୍ଗଜଟାମଣ୍ଡଳୁଁ ଯେସନେ; ୨

---

୧ । ଅଧୋରଣ—ଗଜାରୋହୀ ।

୨ । ଭର୍ଗ—ମହାଦେବ ।

ଜ୍ୱଳେ ଝକଝକ ବର୍ମେ, ଚର୍ମେ, ବସ୍ତ୍ରୟୂଥେ, ୧
ଧ୍ୱଜଦଣ୍ଡେ ପ୍ରଭାପୁଞ୍ଜ ଜିଣି ସୌଦାମିନୀ,
ଖେଳେ ନାନାବର୍ଣ୍ଣ ରଙ୍ଗେ କେତନଅଂଶୁକେ,
ମହାରଣ୍ୟପ୍ରବାହିନୀ ମହାନଦୀସ୍ରୋତେ
କେଳିମଦେ ମତ୍ତ କରିକୁଳକରୋଚ୍ଛ୍ୱାସେ ୨
ଉଡ୍ଡୀନ, ରଜତୋଜ୍ଜ୍ୱଳ ଜଳକଣାଜାଲେ ୩
ମଧ୍ୟେ ଯେସନେ ଖେଳେ କୋଟି ଇନ୍ଦ୍ରଧନୁ;
ସବାପଛେ ଚଳେ ବେନ ଅଶ୍ୱବାର ସାରେ
ଭାସ୍ୱରକୃପାଣପାଣି, ହେମବର୍ମଧାରୀ
ଅରାତିପ୍ରମାଥୀ ପୃଥୁ ଦିଲ୍ଲୀଅଧିପତି,
ଅମର୍ଷୀ ଅମିତତେଜା ପର-ପୁରଞ୍ଜୟୀ,
ତାଙ୍କ ପଛେ ଅଶ୍ୱାରୂଢ଼ା ସଂଯୁକ୍ତା ରୂପସୀ
ମୁକ୍ତକେଶୀ, ମୁକ୍ତାହାରା, ମଣିକିରୀଟିନୀ,
ମନୋହରା, ଅହା, ଯେସନେ ଶାରଦୀୟା ଉଷା
ନୀହାରଭୂଷଣା ଲାବଣ୍ୟତାରକୁନ୍ତଳା
ପୂର୍ବପୃଷ୍ଠେ ଉଦେ ପ୍ରାଚୀନଭଃପଟେ, ୪

---

୧ । ବସ୍ତ୍ରୟୂଥେ—ଉତ୍କୃଷ୍ଟ ଅସ୍ତ୍ରରେ ।

୨ । କେଳିମତ୍ତବନ୍ୟହସ୍ତୀମାନଙ୍କର ଶୁଣ୍ଡର ଫୁତ୍କାରରେ ।

୩ । ରୌପ୍ୟବତ୍ ଶୁଭ୍ର ଜଳଶୀକରର ଆସ୍ତରଣରେ ।

୪ । ଶରତ୍କାଳର ରାତ୍ରିଶେଷରେ ପୂର୍ବଦିଗରେ ଅଭ୍ୟୁତ୍ଥିତ ଯୁଗ୍ମତାରା

ଚଳ ଚଳ ବିଶେଷ କାନ୍ତି, ଉଦ୍ଦୀପିତ ଯଥା
ଚନ୍ଦ୍ରିକାରେ ରତ୍ନ, ଅବା ସ୍ୱଚ୍ଛ ସରସିଜ,
ସରସୀନିର୍ମଳନୀରେ ବାଳରବିକରେ,
ଅଥବା ଯେ ଅଙ୍ଗଠାଣି, ଗଢ଼ିଛି ବିନାଣୀ
ସୁତେ ଛି କରୀନ୍ଦ୍ରରଦେ କୁନ୍ଦେ ତା ବସାଇ !
ଛି ମଧ୍ୟରେ ଖେଳେ ମନ୍ଦହାସର ଚନ୍ଦ୍ରନୀ
ବିଧୁବଦନୀର ଚାରୁବନ୍ଧୁଳୀଅଧରେ !
କେତେ ରଙ୍ଗେ ଲୀଳାନୃତ୍ୟ କରେ କେତେମତେ
ଶ୍ରୀମୁଖପଙ୍କଜରଙ୍ଗେ ଭ୍ରୂଲତା-ନର୍ତ୍ତକୀ ! ୧
କମଳପାଟଳଆଭା ଖେଳେ କ୍ଷଣେ କ୍ଷଣେ,
ଅଧରମଣ୍ଡଳ, ଗଣ୍ଡଯୁଗେ, ଗଳଦେଶେ, ୨
ମୋହିନୀର ଶ୍ରୁତିମୂଳେ ଅବତଂସ ହେନ
ସ୍ୱାତି ତାରା ଚାହେଁ କି ଯେ ମୁଖଚନ୍ଦ୍ରପାଶେ ? ୩

ପୁନର୍ବସୁର ଉଦୟ ହୁଏ । ଏହା ତଳେ ପ୍ରଭାତୀ ତାରା ଏବଂ ପ୍ରଭାତ ତାରା ତଳେ ଉଷାର ପାଟଳାଭା ଦୃଷ୍ଟ ହୁଏ ।

୧ । ମୁଖ ରଙ୍ଗଭୂମି, ଭ୍ରୂଲତା ସେହି ରଙ୍ଗଭୂମିର ନର୍ତ୍ତକୀ ।
୨ । ପାଟଳ ଆଭା, ଗଣ୍ଡ ଏବଂ ଗଳଦେଶର ଅଯତ୍ନସିଦ୍ଧ ଅଳଙ୍କାର ।
୩ । ସ୍ୱାତି ତାରା ପରସ୍ପର ନିକଟବର୍ତ୍ତୀ ତାରା ।

ନୀଳୋତ୍ପଳନେତ୍ରଯୁଗ୍ମ ଆକର୍ଣ୍ଣ ବିସ୍ତୃତ ।
ମାରଅସ୍ତ୍ରାଗାରରୂପେ ଭ୍ରୂଶିମ୍ମଣତଳେ
ବସନ୍ତେ, ମନୋଜ ଯନ୍ତ୍ରଂ ଦ୍ୱିପ୍ରହର ଦିନେ
ଧୃତି-ପଦ୍ମଶ୍ରୀଙ୍କ ଖଣ୍ଡି ଲୁଟେ ଅକୁଣ୍ଠିତେ,
ଉଚ୍ଚ ଦୃଢ଼ କୁଚକଳି ଆବୃତ କଞ୍ଚୁକେ,
ଗୁରୁ କ୍ଷୀଣକଟୀ ବଦ୍ଧ ରତ୍ନସାରସନେ,
ଉଚ୍ଚ କ୍ଷୀଣ ଏକ ପୁଣି ଅପରେକ ସକାଶେ, ୧
କାନ୍ତିକୁଳଦେବୀ ପ୍ରାୟେ ବସେ ସୀମନ୍ତିନୀ ୨
ସେନାକୁଳ ସ୍ୱେ ପ୍ରାନ୍ତରେ, ଇନ୍ଦୁକଳା ଯଥା, ୩
ବସନ୍ତେ, ଅହା, ଉତ୍ତରଳସିନ୍ଧୁବୀଚଦଳେ, ୪
ପ୍ରଚ୍ଛନ୍ଦେ ପ୍ରତିଫଳ, ଯେ ଶୋଭାପିଚ୍ଛୁଳୀ
ସ୍ୱୋଃଭଙ୍ଗ ସ୍ୱେ ବୀଚିବକ୍ଷେ ଯଥା ବଧୂଚ୍ଛବ,
ରୂପେ ଦେବସେନାପତି ଦେବସେନା ମତି (୫)

୧ । ସ୍ତନର ଉନ୍ନତାବଶତଃ କଟୀ କୃଶ ଦିଶୁଅଛି, ପୁଣି କଟୀର କୃଶତାବଶତଃ ସ୍ତନ ଉଚ୍ଚ ଦିଶୁଅଛି ।

୨ । କାନ୍ତିକୁଳଦେବୀ — ଶୋଭାର ଅଧିଷ୍ଠାତ୍ରୀ ଦେବତା ।

୩ । ସେନାକୁଳ — ସେନାପରିପୂର୍ଣ୍ଣ ।

୪ । ସମୁଦ୍ରଲହରୀ ସହିତ ସୈନ୍ୟମାନଙ୍କର ଏବଂ ଇନ୍ଦୁକଳା ସହିତ ସୁନ୍ଦରୀର ଉପମା ।

୫ । ଦେବସେନାପତି — କାର୍ତ୍ତିକେୟ ।






ପୃଥୁ, ପୃଥୁପ୍ରେମ୍ଦିଙ୍କି ସେ ତୋରଣମୁଖେ,
ଦୂରୁଁ ଦେଖି, ନିଜ ନିଜ ବାହିନୀ ସହିତେ
ନାନାଦେଶିସେନାପତି ବନ୍ଦିଲେ ସାଦରେ
ବୀର ବୀରାଙ୍ଗନାପଦ ସଙ୍ଗେ ଯଥା ବିଧି,
ସମସ୍ତଙ୍କୁ ଦିଲ୍ଲିପତି ସସ୍ମିତେ ସମ୍ଭାଷି
ଆରମ୍ଭିଲେ ମନ୍ତ୍ରୋତ୍ସାହେ ରଣର ମନ୍ତ୍ରଣା
ରଣପ୍ରିୟ, ମାତ୍ର ସେହି ଉତ୍ସାହର ବହ୍ନି
ବିମ୍ବିତ ନ ଦେଖି ସେନାପତିଙ୍କ ବଦନେ,
କ୍ଷୁଣ୍ଣ ହେଲେ ବୀରମଣି ବିସ୍ମୟେ ବିଷାଦେ;
ବୀର୍ଯ୍ୟପୁଷ୍ଟ ଆର୍ଯ୍ୟପଣ ଫିଙ୍ଗି ପୃଷ୍ଠଦେଶେ
ଆର୍ଯ୍ୟବୀରେ, ଭୀରୁମତି କଳଉପୀଡ଼ନେ,
ଭୀରୁଚିତ ବର୍ତ୍ମେ ଚଳି ରଣବିଭୀଷିକା, (୧)
ସବେ କଲେ ଅଳ ଦିଲ୍ଲୀପତିଙ୍କ ସମ୍ମୁଖରେ
ପରସ୍ପର ଯାଚିବାକୁ ପତ୍ରପତ୍ରିପଦେ (୨)
ମାନବ୍ୟୟେ, ଧିକ୍କାରିତ ପ୍ରାଣର ଭିକାରୀ;
ପ୍ରାଣରଙ୍କ, ଭୟାତୁର, ଅଦୂରଦରଶୀ
ହୀନଚେତାଙ୍କର ଏହି ହୀନମତି ଦେଖି,

। ଭୀରୁଚିତ — ଭୀରୁଜନୋଚିତ ।

୨ । ପତ୍ରପତ୍ରି — ଶର ।




ଏ ହୀନମନ୍ତ୍ରଣା ଶୁଣି, କ୍ରୋଧେ ଆର୍ଯ୍ୟମଣି
ଅମର୍ଷୀ ସମ୍ବୋଧି ତାଙ୍କୁ, ସମ୍ବୋଧି ବାହିନୀ,
କହିଲେ ଏମନ୍ତ ଗିର ଘୋରଘନ ସ୍ୱରେ—
"ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେକି ଆର୍ଯ୍ୟନାମ-ଦାୟାଦ ଜଗତେ ? (୧)
ବିନାୟୁଦ୍ଧେ ନ ଦେବାର ସୂଚ୍ୟଗ୍ରମେଦିନୀ (୨)
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କର ଶୋଣିତ
ବହୁଛି କି, ଅହେ ଯୋଧେ, ତୁମ୍ଭ ଧମନୀରେ ?
ଧିକ ! ଧିକ ! ଶତଧିକ ! ଧିକ ଏ ମନ୍ତ୍ରଣା !
ଏ ହୀନ ମନ୍ତ୍ରଣା, ଭୀରୁ-ପାମର-ଉଚିତ,
ଉଚ୍ଚାରି ଯା କଲ ଶୂରେ, ଅପବିତ୍ର ଆଜ
ନିଜ ମୁଖ, ଶ୍ରୋତା କର୍ଣ୍ଣ, ଆର୍ଯ୍ୟବଂଶଧରେ !
ଥିବା ଅଲ୍ପଜନ ତୁମ୍ଭେ ଏ ନାମ ଧାରଣେ !
ଭୀରୁତା ଯେ, ସେହି ହିନା ବୀରର ମରଣ, (୩)
ଭୀରୁଭାବ ବହି ତୁମ୍ଭେ ମୃତ ଏ ଜଗତେ,
ଲୋଡଇ କି କେହି କେବେ ମୃତର ମନ୍ତ୍ରଣା ?
ପଳାଇ ଏ ରଣସ୍ଥଳୁ ରହିବ କି ଆଉ

୧ । ଆର୍ଯ୍ୟପଦର ଉତ୍ତରାଧିକାରୀ ।
୨ । ଦୁର୍ଯ୍ୟୋଧନର ପ୍ରତିଜ୍ଞା ପଣ ।
୩ । ଭୀରୁତାହିଁ ବୀରମାନଙ୍କର ମୃତ୍ୟୁ ।

ଚିରଦିନ ରହିବ? ଯେବେ ନାହିଁ ସେ ଦୁରାଶା,
ନିଜ ମୁଖ, ପିତୃନାମ, ବୃଥା କଳଙ୍କିତ
କରିବ ଏରୂପେ କିପାଁ ପ୍ରାଣରଙ୍କ ମୂଢ଼େ ?
ଦିଗ୍‌ବିଜୟି-ଅର୍ଯ୍ୟବଂଶ-ଔରସେ ଜନମି-
ହେଲ କି ଅକ୍ଷମ, ଅନ୍ଧା, ନିଜପ୍ରରକ୍ଷଣେ?
ହିମଜର୍ଜ୍ଜସ୍ଥଳ-ଭୀମ ହିମାଦ୍ରି-ପ୍ରାଚୀରେ
ଦୁର୍ଗମଭାରତଦୁର୍ଗ କାପୁରୁଷହାତେ,
କେ କହିବ ମୋତେ, କିପାଁ ଅର୍ପିଲେ ବିଧାତା ?
ଏତେ ମାୟା ପ୍ରାଣେ ଯେବେ, ତେଜି ରଣଭୂମି
ଶୃଗାଳସ୍ୱରୂପେ ତୁମ୍ଭ ରଙ୍କପ୍ରାଣ ନେଇ,
ବାଜି ରଣ ଗୃହେ ଯାଇ ନାରୀବସ୍ତ୍ରାଞ୍ଚଳେ,
ହେ ନାରୀଏ, ଘୁଣାକ୍ଷରେ ନରଦେହଧାରୀ ! (୨)
ବାହୁଡ଼ ସ୍ୱଗୃହେ ବେଗେ କଳଙ୍କିତ ମୁଖେ,
ଲାଙ୍ଗୁଳ ସଙ୍କୋଚି ଶ୍ୱାନ ପଳାଏ ଯେସନେ,
ବାହୁଡ଼ ସ୍ୱଗୃହେ ବେଗେ, ଖଡ୍ଗ, ଶୂଳ ଆଦି
ଭୂଷଣ ନ ହୋଇ ଯାହା ମହାଭାର ଏବେ (୨)

୧ । ହେ ନାରୀଏ—ଅବଜ୍ଞାବ୍ୟଞ୍ଜକ ସମ୍ବୋଧନ । ଘୁଣାକ୍ଷରରେ ନରଦେହଧାରୀ, ମାତ୍ର ବସ୍ତୁତଃ ନାରୀ ।

୨ । ଅସ୍ତ୍ର ବୀରମାନଙ୍କର ଭୂଷଣ, ମାତ୍ର କାପୁରୁଷଙ୍କ ପକ୍ଷରେ ଭାର ଅଟେ ।

ତୁମ୍ଭ ଘାରୁହାରେ, କର ଫାଳେ ପରଶଣ;
ଫିଙ୍ଗିଦିଅ ଏହି ଢାଲ, କି ସୋହାଏ ଢାଲେ ?
ତୁମ୍ଭ ଯୋଗ୍ୟ ଢାଲ ଚିନ୍ତା ଚକ୍ରର, ସେଚକ;
ସେହି ଢାଲେ ଅସ୍ତ୍ରରକ୍ଷା ଅଚରନ୍ତ ଏବେ,
ବଳାହର ସେତୁ ନନ୍ଦ ସଙ୍ଗ୍ରାମଅଗଣା,
ତପସ୍ୟାର ସେତୁ ଏହୁ, ତପସ୍ୱୀ କାଂକ୍ଷିତ,
ତପଦର ଯଜ୍ଞବେଦି, ଜୀବନ ଆହୁତି
ଦିଅନ୍ତି ଅଗ୍ନିଦେ ଯହିଁ ଯଶୋଲିପ୍ସୁ ବୀରେ;
ତୁମ୍ଭପର ଶ୍ୟାମିକାର ରେଖା ଏ କଲଙ୍କେ (୧)
ପଡ଼ିବାର ଲେଖି ନାହିଁ ବଧି କେଉଁ କାଳେ,
କି ସାହସେ କଲ ତୁମ୍ଭେ ଅପବିତ୍ର ଅତି,
ଏ ତୀର୍ଥ, ଅର୍ଯ୍ୟର ଏହି ଧର୍ମ୍ମଯୁଦ୍ଧସ୍ଥଳୀ? (୨)
ଅର୍ଯ୍ୟନାମେ ଏ କାଳିମା ବୋଳିଲ କିପାଇଁ ?
ଆସ ହେ ସଂଗ୍ରାମସିନ୍ଧୁ ଅନାମିଳବୀରେ !
ଏ ମହାକଳଙ୍କ ଯାଇ ପ୍ରକ୍ଷାଳିବା ଖରେ

୧ । ଶ୍ୟାମିକା—ଭେଲମ୍ଭନା । ରଣକ୍ଷେତ୍ରରୂପ କନକରେ କାପୁରୁଷରୂପି କୃତ୍ରିମସୁବର୍ଣ୍ଣର ରେଖା ପଡ଼ିଇ ନାହିଁ ।

୨ । ଧର୍ମ୍ମଯୁଦ୍ଧ – ସ୍ୱଦେଶରକ୍ଷାର୍ଥ ଯୁଦ୍ଧ । ପରରାଷ୍ଟ୍ର ଗ୍ରାସ ସଙ୍କଳ୍ପ ଯୁଦ୍ଧ ପାପଯୁଦ୍ଧ ।

ରଣକ୍ଷେତ୍ରେ, ତପ୍ତଲୌହେ ଅବା ନଗ୍ନଲୌହେ,
ବଞ୍ଚିତ ତୁମର ଶୂଳ ରିପୁରକ୍ତସ୍ୱାଦୁଁ
ବହୁଦିନ, ଦଅ ତାଙ୍କୁ ଶୋଣିତ-ପାରଣା,
ଶତ୍ରୁଦେହେ ତାଙ୍କ ମୁନ ପୁଣି ନଅ ଶାଣି,
ଆସ ବେଗେ, ରଣସ୍ଥଳୁ ଝିଙ୍କି ମହୋଲ୍ଲାସେ
ଆଣିବା ବିଜୟ-ଲକ୍ଷ୍ମୀ, ନ ପାରିଲେ ତାହା,
ବୀରଶେଯ ଆଶ୍ରିବା ତ ନିଜ ହାତକଥା, (୧)
ଆର୍ଯ୍ୟର ଦୁର୍ଭାଗ୍ୟଫଳେ ଆସିବ ଏ ଦେଶେ
ଯେବେ ଏ ଯବନ, ଅସୁ ଆମ୍ଭ ଶବ ମାଡ଼ି ; (୨)
ଫଳୁ ଯା ଫଳିବ କର୍ମେ, ରହୁ ଧର୍ମ ଧରି,
"ମନ୍ତ୍ରର ସାଧନ ଅବା ଶରୀର ପାତନ"
ଆର୍ଯ୍ୟର ଯା ସାରଧର୍ମ, ପାଳ ଆର୍ଯ୍ୟବୀରେ !
ଆର୍ଯ୍ୟକୁଳଧ୍ୱଜ ପୃଥୁରାଜଙ୍କ ଗର୍ଜ୍ଜଣେ ।"
ସୂର୍ଯ୍ୟତେଜସ୍ପର୍ଶେ ଯେସନେ ସୂର୍ଯ୍ୟକାନ୍ତମଣି
ଉଗାରେ ଅନଳକଣା, ଅମର୍ଷିର ବାଣୀ
ଢାଳି ଦେଲା ତେଜ-ବହ୍ନି ନରେନ୍ଦ୍ରଙ୍କ ହୃଦୟେ

୧ । ଯୁଦ୍ଧରେ ପ୍ରାଣବିସର୍ଜ୍ଜନ ନିଜର ଆୟତ୍ତ । ବୀରର ସୌଭାଗ୍ୟରୁ ବଞ୍ଚିତ ହେଲେ ସୁଦ୍ଧା ବୀରର ମୃତ୍ୟୁରୁ ଆମ୍ଭେମାନେ ବଞ୍ଚିତ ହେବୁଁ ନାହିଁ ।

୨ । ଆମ୍ଭେମାନେ ଜୀବିତ ଥାଉଁ ଥାଉଁ ଯବନ କଦାଚ ଆସି ପାରିବ ନାହିଁ ।






ଯୋଧଙ୍କର, ସର୍ବେ ଦମ୍ଭେ ଗର୍ଜିଲେ ହୁଙ୍କାରେ,
"ଜୟ ପୃଥୁରାଜ" ରବେ କମ୍ପିଲା ମେଦିନୀ,
ହ୍ରେଷିଲେ ତୁରଙ୍ଗେ, ଗଜେ ଗର୍ଜିଲେ ଭୈରବେ,
ଉଠିଲା ଅମ୍ବର ଜାଳ ଅସ୍ତ୍ରର ଝମକେ,
ଦାବାନଳେ ବନ ଯଥା, ବୀରବାଦ୍ୟସ୍ୱେ‌ଳେ
ଚକ୍ରବାଳେ ପ୍ରତିଧ୍ୱନି ଜାଗିଲେ ଚମକି, (୧)
ବ୍ୟଗ୍ର ହୋଇଲେ ଅଗ୍ରସର ହେବାକୁ ସଂଗ୍ରାମେ
ଉଦ୍‌ଆୟୁଧ ଯୋଧବୃନ୍ଦ, ସର୍ବେ ଏକମେଳେ (୨)
ବରିଲେ ଅମର୍ଷିଙ୍କାରେ ସେନାପତିପଦେ;
ମହାଦରେ ପୃଥୁ ତାହୁଁ ବାନ୍ଧିଦେଲେ ଖାଡ଼ୀ
ତାଙ୍କ ଶିରୋଦେଶେ; ଅନ୍ତଃପୁରୁ ଅବତରି,
ବନ୍ଦାଜରଭନଥାଳୀ ପଦ୍ମହସ୍ତେ ଘେନି,
ସମ୍ପାଦିଲେ ସଂଯୁକ୍ତା ନୀରାଜନାବଧି, (୩)
ଦୈତ୍ୟଯୁଦ୍ଧେ ଶଚୀ ଯଥା ଦେବସେନାନାଥେ; (୪)
ପୃଥୁଙ୍କୁ ମେଲାଣି ଦେଇ ବାହୁଡ଼ିଲେ ରାଣୀ
ଅଶ୍ରୁପୂର୍ଣ୍ଣମୁଖେ ପୂର୍ଣ୍ଣକଳାକରମୁଖୀ;
"ଜୟ ପୃଥୁ" ନାଦେ ଏଣେ କମ୍ପାଇ ମେଦିନୀ,
ରଣକ୍ଷେତ୍ରଯାତ୍ରୀ ହୋଇ ଚଳିଲା ବାହିନୀ

(୧) ଚକ୍ରବାଳ—ଦିଗ୍‌ବଳୟ ।
(୨) ଉଦ୍‌ଆୟୁଧ—ଯେମାନେ ଅସ୍ତ୍ର ଉତ୍ତୋଳନ କରିଅଛନ୍ତି ।
(୩) ଯୁଦ୍ଧଯାତ୍ରା କାଳରେ ସେନାପତିମାନଙ୍କର ଆରତି ହେବାର ବିଧି ଥିଲା ।
(୪) ଦେବସେନାନାଥ—କାର୍ତ୍ତିକେୟ ।




ଦଳେ ଦଳେ ରଣୋନ୍ମାଦେ, ରଣବାଦ୍ୟତାଳେ,
ତାରକାଭୂଷିତ-ଚଳବ୍ୟୋମତୁଲ୍ୟ ଭଙ୍ଗି; (୧)
ପ୍ରାସାଦେ, ପ୍ରାଚୀରେ, ପୁଣି ଗବାକ୍ଷେ, କୁଟ୍ଟିମେ
ନିରେଖିଲେ ଲୁବ୍ଧ ହୋଇ ଦିଲ୍ଲିପୁରନାରୀ
ଅପୂର୍ବ ରଙ୍ଗେ ରଣଯାତ୍ରା, କରପଦ୍ମ ଯୋଡ଼ି
ବିଜୟବାଞ୍ଛା ଯାଚ ରଣଲକ୍ଷ୍ମୀପଦେ,
ବରଷିଲେ ଲାଜାଞ୍ଜଳି କାହିଁ ବରାଙ୍ଗନା,
କାହିଁ ରଣଯାତ୍ରୀ ପୁତ୍ରେ ବଧୂରା ଜନନୀ
ଦୂରୁଁ ଦେଖି, ମୁହୁର୍ମ୍ମୁହୁ ମୁଣ୍ଡେ କରହାଣି
କାନ୍ଦିଲା କରୁଣେ ଦୋଷି ଦାରୁଣ ବିଧିଙ୍କୁ;
ଅତୃପ୍ତନୟନେ କାହିଁ ଉଭା ପ୍ରଣୟିନୀ
ବ୍ୟାବର୍ତ୍ତିତପ୍ରିୟମୁଖ ଦେଖିବାର ଆଶେ
ଥରେ ହେଲେ, ଅମରଣସ୍ମୃତିର ସଙ୍ଗୀନ; (୨)
କାହିଁ ପ୍ରେମଶୀଳା ନବବିବାହିତା ବାଳା,
ପକାଏ ରମଣପଦେ, ବେଢ଼ିଚିତ୍ରେ ଯେ କି ସେ,
ନୀଳୋତ୍ପଳଦଳଦାମରୂପ ବେନି ଆଖି ?
ଅଶ୍ରୁଜଳନିର୍ଦ୍ଦେଶେ, ବାଷ୍ପଗଦଗଦଭାଷେ,

(୧) ସଶସ୍ତ୍ର ସୈନ୍ୟମାନଙ୍କ ଗତି ଦେଖି ବୋଧ ହେଲା ଯେମନ୍ତ କି ନକ୍ଷତ୍ର-ମଣ୍ଡିତ ନଭୋମଣ୍ଡଳ ଚଳି ଯାଉଅଛି ।

(୨) ଯୁଦ୍ଧଯାତ୍ରୀ ପ୍ରଣୟୀ ମୁଖ ଫେରାଇ ଥରେ ଅନାଇଲେ ସେହି ଦୃଶ୍ୟ ମରଣ ପର୍ଯ୍ୟନ୍ତ ସ୍ମୃତିର ସମ୍ପତ୍ତି ହୋଇ ରହିବ ଏହି ଆଶାରେ ପ୍ରଣୟିନୀ ଉତ୍ସୁକନେତ୍ରରେ ଉଭା ହୋଇ ରହିଅଛି ।

କ୍ରୋଡ଼ସ୍ଥ ଶିଶୁକୁ କାହିଁ ଦିଅଇ ଚହ୍ଲାଇ
ରଣଯାତ୍ରୀ ପିତୃ ତାର ସେ ଶିଶୁର ମାତା,
ଲୋଚନେ ଲୋଚନଜଳ ସ୍ତମ୍ଭି ସୁଲୋଚନା; (୧)
ଶୋକୋଚ୍ଛ୍ୱାସେ କାହିଁ ପୁଣି ଦେଖଇ କୁମାରୀ
ମାନସପତିର ଶୁଭ୍ରମୂରତି ସହିତେ (୨)
ସୁଖର ଆକାଶହର୍ମ୍ମ୍ୟ, ଆଶାବିରଚିତ, (୩)
ମିଶି ଯାଉଅଛି ତାର ଆଶା-ଚକ୍ରବାଳେ, (୪),
ଭାଇଙ୍କ ଅନାଇ କାହିଁ କାନ୍ଦଇ ଭଉଣୀ,
ପିତାଙ୍କୁ ଅନାଇ କାହିଁ କାନ୍ଦଇ ଦୁହିତା
ଶ୍ୱାସ ସଙ୍ଗେ ତେଜି ପୁଣି ଦର୍ଶନର ଆଶା,
ଦିଲ୍ଲିପୁରୀ ଶିରୋଦେଶ ପୂରିଲା ଏରୂପେ
ଅବଳାବିଳାପେ, ବାଳ, ବୃଦ୍ଧର ମନାସେ ।
ଯତ୍ନସନ୍ନିବେଶେ, ସ୍ୱେଚ୍ଛାସନ୍ନଦ୍ଧଶରୀରେ
ଅଗ୍ରେ ଉଭା ଯବନର ବ୍ୟୂହିତ ବାହିନୀ, (୫)
ମହାଦୃପ୍ତ, ଉଚ୍ଛ୍ୱସିତ ସଂଯତସାହସେ, (୬)
ଦୃଢ଼ପ୍ରତିଜ୍ଞାର ମୁଦ୍ରା ମୁଦ୍ରିତ ଲଲାଟେ,

(୧) ଲୋତକବିସର୍ଜନ ଅଶ୍ରୁଭୂତକ, ଏହା ହେତୁରୁ ସେଥିର ସ୍ତମ୍ଭନ ।
(୨) ମାନସପତି—ମନେ୨ ଯାହାଙ୍କୁ ପତିରୂପେ ବରଣ କରିଅଛି ।
(୩) ଆଶାବିରଚିତ—ଆଶାଗଠିତ ସୁଖର ପ୍ରାସାଦ ।
(୪) ଆଶା-ଚକ୍ରବାଳେ—ଦିକ୍‌ଚକ୍ରରେ ।
(୫) ବ୍ୟୂହିତ—ବ୍ୟୂହରେ ସଜ୍ଜିତ ।
(୬) ସଂଯତସାହସ—ଯେଉଁ ସାହସ ଉଚ୍ଛୃଙ୍ଖଳ ନୁହେ ।






ଅସି, ଶୂଳ, ଭଲ୍ଲ ଆଦି ଝଳେ ଝକ ଝକେ
ସୌରକରେ, ଠିକରାଇ ଅଖି ଖର ତେଜେ,
ଶ୍ୟାମଉପଷ୍ପୃଷ୍ଠଶାଂସୀ ଧୂମକେତୁ ପ୍ରାୟେ,
ବାଳେନ୍ଦୁଲାଞ୍ଛିତଧ୍ୱଜ ଉଡ଼ଇ ସମୀରେ (୧)
ଊର୍ଦ୍ଧ୍ୱଦେଶେ; ଧିକ, ଧିକ, ସେ ଧ୍ୱଜ ସହିତେ
ଦେଶଦ୍ରୋହକଳଙ୍କର ବାନାରୂପେ ପୁଣି
ତୋଳିଅଛି ନନ୍ଦ ଧ୍ୱଜ ରାଠୋରପାଂଶୁଳ
ଜୟଚନ୍ଦ୍ର, ଯବନର ପ୍ରସାଦଭିଖାରୀ; (୨)
ନନ୍ଦପାଇଁ, ମାତୃଭୂମି ଆର୍ଯ୍ୟାବର୍ତ୍ତପାଇଁ
ବ୍ରତ ଯାର ଅଧୀନତା-ଶାଙ୍କୁଳ-ସର୍ଜ୍ଜନା,
ସେ ପାପୀ ସହିତେ ବନ୍ଧ ପାପସନ୍ଧି-ପାଶେ,
ଆର୍ଯ୍ୟନାଶେ ଯବନର ଆର୍ଯ୍ୟସହକାରୀ,
କାଶ୍ମୀର, ପୁଷ୍କଳାବତୀ, ତକ୍ଷଶିଳାପୁରୀ, (୩)
ଶାଳାତୁର, ହଂସପୁର ଆଦି କର ଯେତେ (୪)
ମର୍ତ୍ତ୍ୟସ୍ୱର୍ଗ-ଭାରତର ତୋରଣକୁଞ୍ଚିକା-

(୧) ଯବନଧ୍ୱଜ—ବାଳେନ୍ଦୁ-ଲାଞ୍ଛିତ ।

(୨) କାନ୍ୟକୁବ୍ଜପତି ରାଠୋରବଂଶୀୟ ଜୟଚନ୍ଦ୍ର, ସଂଯୁକ୍ତାର ପିତା ଏବଂ ପୃଥ୍ୱୀଙ୍କ ଶ୍ୱଶୁର ।

(୩) ରାମାନୁଜ ଭରତଙ୍କ ପୁତ୍ର ତକ୍ଷ ଓ ପୁଷ୍କଳ କର୍ତ୍ତୃକ ତକ୍ଷଶିଳା ଏବଂ ପୁଷ୍କଳାବତୀ ନଗରୀ ସ୍ଥାପିତ ହୋଇଥିଲା । ଏମାନ ପଞ୍ଜାବର ଅନ୍ତର୍ଗତ ।

(୪) ଶାଳାତୁର—ବର୍ତ୍ତମାନ ଲାହୋର । ହଂସପୁର—ଆଧୁନିକ ମୂଲତାନ ।









ପଞ୍ଚନଦଜନପଦ ରାଜନ୍ୟମଣ୍ଡଳୀ (୧)
ମିଶିଛନ୍ତି ତହିଁ ଆସି ନିଜ ଦଳବଳେ,
ସଦ୍ୟଲାଭଲୋଭୀ, ମାତ୍ର ଅନ୍ୟ ସରଣାମେ ।
ଚତୁରଙ୍ଗ ନେହାରି ତହୁଁ ବେନ ଅନୀକିନୀ
ଗର୍ଜିଲେ ଭୈରବ ରଡ଼ି, ଯେହ୍ନେ ଘଡ଼ଘଡ଼ି
ଯୁଗାନ୍ତର, ନଭଗର୍ଭ ବିଦାରି ସେ ଧ୍ୱାନେ;
ଭ୍ରୂକୁଟିକୁଟିଳମୁଖେ, ଆରକ୍ତଲୋଚନେ
ନିରେଖିଲେ ବେନ ସେନା ବେନଙ୍କି ସ୍ତମ୍ଭିତ
ଲବେ ମାତ୍ର, ବାତ୍ୟା ଆଗେ ବାତସ୍ତମ୍ଭ ଯଥା; (୨)
ବିଷମ ସଂଶୟ ଦମ୍ଭ-ଆବରଣତଳେ
ଆନ୍ଦୋଳିଲା ମୁହୁର୍ମୁହୁ ବୀରବୃନ୍ଦମନଃ,
ରକ୍ତ ହୋଇଗଲା ଜଳ, ପାଣ୍ଡୁ ଗଣ୍ଡସ୍ଥଳୀ,
ଥରିଲା ପାଦର ଭଣ୍ଡା ଥରଥର ଥରେ
ଏକ ଆରେକରେ ଭେଟି, ସାହସ ବିସ୍ମରି
ଭଜିଲା ଆତଙ୍କ ମହାସାହସିର ହିଆ
ବିକଟାଳ କାଳଆସ୍ୟ-କୁହର ଅଗ୍ରତେ, (୩)
ସଂଗ୍ରାମସଙ୍କେତଶଂଖୀ ନାଦିଲା ଭୈରବେ
ଏ କାଳେ ସଂଗ୍ରାମଶିଙ୍ଗା, ଢକ୍କା, ତୂରୀ, ଭେରୀ,

(୧) ପଞ୍ଚନଦଜନପଦ ଅର୍ଥାତ୍ ପଞ୍ଜାବ ଭାରତବର୍ଷର ତୋରଣର ଖୁଣ୍ଟ ସ୍ୱରୂପ ।
(୨) ମହାବାତ୍ୟାର ଅବ୍ୟବହିତ ପୂର୍ବେ ପବନ ଯେପରି ସ୍ତମ୍ଭିତ ହୋଇଯାଏ ।
(୩) ଯମର ଭୟଙ୍କର ମୁଖକୁହର ସମ୍ମୁଖରେ ।

ଝଗଝମ୍ପ, ଝରଝରା, ଦାମାମା, ଦୁନ୍ଦୁଭି,
ପ୍ରତିଧ୍ୱନି ଉପୁଜାଇ କକୁଭକୁହରେ
ପୁନଃପୁନଃ, ବିଶ୍ୱଧ୍ୱଂସିରୁଦ୍ରଶିଙ୍ଗା ପରି, (୧)
ଆମୂଳ ବସୁଧା-ବକ୍ଷ କମ୍ପାଇ ଯେ ତାନେ,
ସେ ଅରବେ ମହାଦମ୍ଭେ ମିଶିଲେ ଆହବେ
ଆର୍ଯ୍ୟ ଯବନର ସେନା ଗର୍ଜ୍ଜି ହୁଁହୁଙ୍କାରେ
ପ୍ରଳୟଜୀମୂତ ଯେହ୍ନେ, ପୂର୍ଣ୍ଣ ଇରମ୍ମଦେ, (୨)
ପ୍ରଭଞ୍ଜନପୃଷ୍ଠେ ଜବେ ବେଗେ ଉଡ଼ିଆସି
ବେଢ଼ଆଜୁ, ବେଢ଼ପରେ ପଡ଼ନ୍ତ ବେଢ଼ଏ,
ଆତଙ୍କେ କମ୍ପିଲା ବିଶ୍ୱ ସେ ଘୋର ନିର୍ଘୋଷେ,
ଦୈତେୟଶ୍ୱରବୃନ୍ଦଶିରେ ତପଃସାରରୂପି- (୩)
ଦମ୍ଭୋଳି କ୍ଷେପିଲେ ଅବା ଦମ୍ଭୋଳିନିକ୍ଷେପୀ, (୪)
କି ପୁରେ, କି ଜନପଦେ, ଭୂକମ୍ପନେ ଯଥା
ମଡ଼ ମଡ଼ ମଡ଼ ହୋଇ କମ୍ପିଲା ସଘନେ
ଭବନ, ପାଚେରି, ପୀଡ଼ା, ଖରତରସ୍ରୋତେ
ଚଳିଲା ଯମୁନାପାଣି ସୁରଧୁନୀମୁଖେ,
ପ୍ରଜାପତିକ୍ରତୁଧ୍ୱଂସେ ବୀରଭଦ୍ରରୂପୀ

(୧) ବିଶ୍ୱପ୍ରଳୟକାରୀ ମହାଦେବଙ୍କ ଶିଙ୍ଗା ପରି ।
(୨) ଇରମ୍ମଦ—ବଜ୍ରାଗ୍ନି ।
(୩) ତପସ୍ୟା ଅତି କଠିନପଦାର୍ଥ । ବଜ୍ର ଅତି କଠିନ ହୋଇଥିବାରୁ ତପସ୍ୟାର ସାରରୂପେ ବର୍ଣ୍ଣିତ ହୋଇଅଛି ।
(୪) ଦମ୍ଭୋଳି—ବଜ୍ର । ଦମ୍ଭୋଳିନିକ୍ଷେପୀ—ଇନ୍ଦ୍ର ।

ବିଶ୍ୱନାଶୀ ରୌଦ୍ରଜ୍ୱରପ୍ରଶ୍ୱାସ ପଶ୍ଚାତ୍ତେ (୧)
ବହିଲା ମରୁତ, ଦୂର ଦିଙ୍ମୁଖ ଘୋଡ଼ାଇ
ଧୂଳି ମେଘେ, ମହାବେଗେ ଉପାଡ଼ି ଦ୍ରୁମାଳି;
ଶାବକର ମାୟା ଛାଡ଼ି ଉଡ଼ିଗଲେ ନୀଡ଼ୁଁ
ବିହଙ୍ଗେ, ଗଗନ ପୂରି କରୁଣକୂଜନେ,
ପଳାଇଲେ ଜୀବକୁଳ କିଏ କେଉଁ ଆଡ଼େ
ବଣା ହୋଇ, ପଳାଇଲେ ଯୋଗୀ ଯୋଗ ଛାଡ଼ି,
ଗର୍ଭିଣୀର ଗର୍ଭ ସ୍ରବିପଡ଼ିଲା ଅକାଳେ,
ଚକିତଶିଶୁକୁ ହସ୍ତେ ଧରିଲାକ ଜାକ
ଅଙ୍କଟେ ତା ମାତା କ୍ରୋଡ଼େ ସ୍ତନଦାନେ ରତା, (୨)
ଛନ୍ନକାରେ ତ୍ରସ୍ତ ହୋଇ ହେଲେ ଛନ୍ନମତି
ସର୍ବପ୍ରାଣୀ କି ଜଳେ, କି ସ୍ଥଳେ, ବିହାୟସେ;
ଅଂଶିଳା, ଫେନିଳା, ଗିରିଗୈରିକେ ଅରୁଣା,
ଜଳୋଚ୍ଛ୍ୱାସେ ବନ ଭାଙ୍ଗି ଝୁରୁଆପ୍ରାନ୍ତରେ (୩)
ପଶେ ଘୋ ଘୋ ରବେ ଯଥା ନଦୀକୁଳେଶ୍ୱରୀ
ମହାନଦୀ, ସେ ବିଶାଳସ୍ଥଳୀଙ୍କ ଆବରୁ

(୧) ଦକ୍ଷଯଜ୍ଞ ଧ୍ୱଂସସମୟରେ ଶିବଦୂତ ବୀରଭଦ୍ର ଜ୍ୱରରୂପ ଧାରଣ କରିଥିଲେ ।

(୨) ଅଙ୍କଟେ—ନିବଡ଼ରୂପେ ।

(୩) ଝୁରୁଆପ୍ରାନ୍ତର ବାଙ୍କିରାଜ୍ୟ ଅନ୍ତର୍ଗତ, ମହାନଦୀର ଦକ୍ଷିଣତୀରରେ ଅବସ୍ଥିତ । ମହାନଦୀର ପ୍ରବଳବନ୍ୟା ସମୟରେ ଏହା ଦ୍ୱିତୀୟ ଚିଲକାରେ ପରିଣତ ହୁଏ ।

ଜଳଆସ୍ତରଣେ ଦୂରଶୈଳଶ୍ରେଣୀଯାଏ,
ବୁଡ଼ାଇ ଶ୍ୟାମଳକ୍ଷେତ୍ର କୃଷିବଳଆଶା,
ଭସାଇ ଗୋଶାଳା, ଖଳା, ମଞ୍ଚ, ଧାନକୋଠୀ
ମହାବେଗେ, ମହାଦ୍ରୁମବଟପପଲ୍ଲବେ
(ଝୁଲୁଥିଲେ ଆଗେ ଯହିଁ ବିହଙ୍ଗଦମ୍ପତି
ପ୍ରେମାମୋଦେ ଡେଣା) ରଙ୍ଗେ ଖେଳାଇ ମୀନାଳୀ,(୧)
ସେରୂପେ ଯବନଦଳେ ଆର୍ଯ୍ୟବରୂଥିନୀ
ପଶିଲା ପ୍ରଚଣ୍ଡବେଗେ, ରଥୀ ସହ ରଥୀ,
ପଦାତି ପଦାତି ସହ, ସାଦୀ ସଙ୍ଗେ ସାଦୀ,
ନିଷାଦୀ ନିଷାଦୀ ସହ ମିଶିଲେ ଆହବେ;
ରଣୋନ୍ମାଦଉଦ୍ଦୀପନ ରଣବାଦ୍ୟନାଦେ,
ଅସ୍ତ୍ର ଝନ୍‌ଝନେ, ଧନୁଷ୍ଟଙ୍କାରଶବଦେ,
ଆହତର ଆର୍ତ୍ତନାଦେ, ଜେତାର ହୁଙ୍କାରେ,
ଚକ୍ରର ଘର୍ଘରେ, ବାଜିଗ୍ରୀବହ୍ରେଷାରବେ,
ଦନ୍ତାବଳଘଣ୍ଟାରବେ, ଆଉର ବୃଂହିତେ,
ଉଠିଲା ନିର୍ହ୍ରାଦ କର୍ଣ୍ଣବିବରବିଦାରୀ,
ଅମ୍ବୁରାଶିଘୋଷ ଯଥା ପ୍ରଳୟପବନେ,
ବ୍ରହ୍ମାଣ୍ଡଉଦର ଫାଟିଗଲା କି ସେ ନାଦେ ?

(୧) ଯେଉଁ ବୃକ୍ଷମାନଙ୍କର ଶାଖା ପଲ୍ଲବ ମଧ୍ୟରେ ପୂର୍ବେ ପକ୍ଷୀମାନେ କ୍ରୀଡ଼ା କରୁଥିଲେ ବନ୍ୟାଜଳ ସେ ପର୍ଯ୍ୟନ୍ତ ଉଠିବାରୁ ସେଠାରେ ବର୍ତ୍ତମାନ ମତ୍ସ୍ୟମାନେ କ୍ରୀଡ଼ା କରନ୍ତି ।






ବାଣବୃଷ୍ଟି ଘୋଟିଗଲା ଶଲଭ ପରାୟେ (୧)
ନଭୋଦେଶ, ଧୂଳିରାଶି ଅଶ୍ୱଖୁରେ ଉଠି,
ରଥଚକ୍ରେ ସାନ୍ଦ୍ର ହୋଇ, କଟକଣ୍ଠିତାଳେ
ଢ଼ସନ୍ତ, ଭାସ୍କର-ବିମ୍ବ ରୋଧିଲା ଆକାଶେ,
ରଣ-ଉତ୍ସବର ଯୋଗ୍ୟ ଚନ୍ଦ୍ରାତପରୂପେ, (୨)
ବାଳାତପ ପ୍ରାୟେ ଶୋହି ଯେ ଧୂଳି ଅନ୍ଧାରେ
ରକ୍ତଧାରା, କର୍ଦ୍ଦମାକ୍ତ କଲା ବସୁନ୍ଧରା,
ରଣଚଣ୍ଡୀଙ୍କର କି ସେ ଅଳକ୍ତକ-ଲାଗି? (୩)
ଯୁଗାନ୍ତ-ମାର୍ତ୍ତଣ୍ଡ ପ୍ରାୟେ ଜଳନ୍ତି ଅମ୍ବରେ
ଉଜ୍ଜ୍ୱଳ ଯାଦବଚକ୍ର, ମୈଥିଳ-ନାରାଚେ
ଅନ୍ଧାର ଦିଶିଲା ଦିଗ, ଚପଳା ଚମକେ
ଚମକି ଉଜ୍ଜ୍ୱଳଖଣ୍ଡା, ନେପାଳି କଠାର,
କୌଶେୟର ଭିନ୍ଦିପାଳ, ବୈରାଠ ପରଶୁ,
ପଡ଼ନ୍ତି ଝନ୍‌ଝନେ ଠାଣେ ଝପୁବାରବାଣେ; (୪)
ପ୍ରମତ୍ତ-ମାତଙ୍ଗ ଦନ୍ତ ତୀବ୍ର-ଅସ୍ତ୍ରାଘାତେ
ଅନଳସ୍ଫୁଲିଙ୍ଗ ଝଡ଼ି, ଲିଭନ୍ତି ତକ୍ଷଣେ

(୧) ଶଲଭ—ଫଡ଼ିଙ୍ଗ, ଝିଣ୍ଟିକା ।

(୨) ରଣଧୂଳି ଆକାଶରେ ବ୍ୟାପ୍ତ ହୋଇ ରଣୋତ୍ସବର ଉପଯୁକ୍ତ ଚନ୍ଦ୍ରାତପ ହେଲା ।

(୩) ରକ୍ତଧାରା ଯୁଦ୍ଧର ଅଧିଷ୍ଠାତ୍ରୀଦେବୀଙ୍କର ଅଳକ୍ତକ ପ୍ରାୟ ହେଲା ।

(୪) ଠାଣେ—ଭୟଙ୍କରରୂପେ । ଝପୁବାରବାଣେ—ଶତ୍ରୁମାନଙ୍କର ଧାତୁ-ଗଠିତ କବଚ ଉପରେ ।




ଉଚ୍ଛ୍ୱାସେ ଉତ୍ଥିତ କର-ଶୀକର-ଆସାରେ; (୧)
ସ୍ୱସ୍ତର ଶାଣିତ ଶର ସୈନ୍ୟଙ୍କ ଶରୀରେ
ପଶିଲା ସବେଗେ, ଯେହ୍ନେ ଉରଗ ବଲ୍ମୀକେ, (୨)
ଭ୍ରୂକୁଟୀକୁଟିଳମୁଖେ, ଅଧର କାମୋଡ଼ି,
ଅରାତି ଅରାତି ସଙ୍ଗେ ଯୁଝିଲେ ବକ୍ରମେ
ନଦାରୁଣ ସେ ବମର୍ଦ୍ଦେ, ପ୍ରହାର ନର୍ଦ୍ଦଯ୍ୟେ (୩)
ଅରଜ୍ଞ, ପ୍ରହାର ତାର ଖାଇ ଅକାତରେ,
ରକ୍ତାକ୍ଷୁଁ ସଘନେ ଫିଙ୍ଗି ରୋଷାନଳକଣା;
ବିରଥ, ହତାଶ୍ୱ ହୋଇ ରଥୀ, ଅଶ୍ୱବାରେ
ଯୁଝିଲେ ପଦାତିରୂପେ, ଶସ୍ତ୍ରେ ଶସ୍ତ୍ର ହାଣି
ଶସ୍ତ୍ର ସ୍ୱର୍ଗିମାରୁ , ଗାତେ ହୋଇ ଭଡ଼ାଭଡ଼ି,
ମୁଷ୍ଟାମୁଷ୍ଟି, ମୁଥାମୁଥି, କଚାକଚ ରତ,
ଗଡ଼ିଲେ ଅବନୀତଳେ ବେନି ରଣରୋଳେ;
ହସ୍ତୀ, ଅଶ୍ୱ, ରଥୁଁ ଖସି ପଡ଼ିଲେ ପ୍ରବୀରେ
ହତ ହୋଇ, ପୂର୍ଣ୍ଣ୍ୟକ୍ଷୟେ ପଡ଼ନ୍ତ ଭୂତଳେ
ଙ୍ଗିରବେଗେ ତାରକାରେ ଯଥା ପୁଣ୍ୟପ୍ରାଣୀ;
ଅକାଟୁ ଧାରଣଦମ୍ଭେ ଶତ ଶତ ଉଟେ, (୪)

( ୧ ) ଶୁଣ୍ଡର ଫୁତ୍କାରଜନିତ ଶୀକରବୃଷ୍ଟିରେ ।
( ୨ ) ଉଇହୁଙ୍କା ମଧ୍ୟରେ ସାପ ପରି । ( ୩ ) ବମର୍ଦ୍ଦ—ଯୁଦ୍ଧ ।
( ୪ ) ଅସ୍ତ୍ରରେ ଅଚ୍ଛେଦ୍ୟ ହେବେ ଏହି ବଶ୍ୱାସରେ ପୂର୍ବେ ଯୋଦ୍ଧାମାନେ ଶରୀରରେ ଏକପ୍ରକାର ଜଡ଼ି ଧାରଣ କରୁଥିଲେ । ସେହି ଜଡ଼ିର ନାମ ଅକାଟୁ । ଭଟ—ଯୋଦ୍ଧା ।

ଅଚ୍ଛେଦ୍ୟ ଅଭେଦ୍ୟ ଅସ୍ତ୍ରେ କଙ୍କଦେହ ମଣି,
ରଣରୋଳେ ପଶି, ଶତ୍ରୁହସ୍ତେ ହାଣ ଖାଇ,
ବିଧିଲିପି କାଟିବାକୁ ଅକ୍ଷମ ଅକାଠୁ
ଜାଣିଲେ ଏ ମହାଜ୍ଞାନ, ପ୍ରାଣ-ମୂଲ୍ୟ ଦେଇ;
ଗଣ୍ଡିରୁ ବିଚ୍ଛିନ୍ନ ହୋଇ, ଛଟକେ ଛଡିକି,
ଛଟ ଛଟ ହେଲା ଭୂମେ, ରକ୍ତଉତ୍ସସ୍ରାବୀ (୧)
ସାଲଙ୍କାର ହସ୍ତ ପାଦ, ସଶିରସ୍କ ଶିରଃ; (୨)
ପେଷି ହୋଇ ଗଲେ ପତ୍ତି ଅଶ୍ୱେ, ଅଶ୍ୱ ରଥେ, (୩)
ରଥ ଗଜେ ସେ ବିମର୍ଦ୍ଦେ; ରୁଧିରକର୍ଦ୍ଦମେ
ମସ୍ତିଷ୍କ, ଯକୃତ, ପ୍ଲୀହା, ଅନ୍ତ୍ର, ମାଂସ, ବସା,
ହୃଦୟାଦି ମିଶି ହେଲା ଅଯତ୍ନେ ସେ କାଳେ
ଭୈରବୀର ଭୋଗଯୋଗ୍ୟ ବୀଭତ୍ସ ଘାଣ୍ଟିଅ; (୪)
ରଣବ୍ୟୋମେ ଶ୍ୟେନପନ୍ତି ଉଡ଼ିଲେ କୌତୁକେ
ମାଂସ ଲୋଭେ, ରଣଲକ୍ଷ୍ମୀପାଷବତରୂପୀ; (୫)
ରଥିଙ୍କ ଅଚେତ ଦେଖି ଦେଲା ବାହୁଡ଼ାଇ
ରଥ ରଥଯନ୍ତା କାହିଁ ବିଜୁଳିର ବେଗେ, (୬)

(୧) ରକ୍ତ-ଉତ୍ସସ୍ରାବୀ—ରୁଧିରପ୍ରସ୍ରବଣସ୍ରାବୀ ।
(୨) ସଶିରସ୍କ—କବଚଯୁକ୍ତ । (୩) ପତ୍ତି—ପଦାତିକ ।
(୪) ଭୈରବୀ—ପ୍ରେତମାନଙ୍କର ଅଧିଷ୍ଠାତ୍ରୀ ଦେବତା ।
(୫) ପାଷ ଲକ୍ଷ୍ମୀଙ୍କର ପ୍ରିୟପକ୍ଷୀ । ଶ୍ୟେନମାନେ ରଣଲକ୍ଷ୍ମୀଙ୍କର ପାଷସ୍ୱରୂପ ହେଲେ ।
(୬) ରଥଯନ୍ତା—ସାରଥି ।






ତୀବ୍ର କଶାଘାତେ ତ୍ରାସେ ତଜି ବାହାବଳୀ; (୧)
କାହିଁ ଫେଣୋଦ୍ଗାରମୁଖେ, ରକ୍ତାକ୍ତବିଗ୍ରହେ,
ଅନଳ ଉଗାର ଘୋଣାନିଃସୃତ ଫୁତ୍କାରେ,
ବ୍ୟସ୍ତେ ପଳାଇଲେ ଅଶ୍ୱ, ନିହତ-ସାଦୀଙ୍କ
ପୃଷ୍ଠେ ବହି, ଶିରସ୍ତ୍ରାଣ ଲୋଟାଇ ଭୂତଳେ
ସେ ସାଦୀର, ଶୋଣିତାର୍ଦ୍ର-କୁନ୍ତଳ ସହିତେ;
ପଳାଇଲେ ରଣସ୍ଥଳୁଁ ବିକଟଚିତ୍କାରେ
ସୌଦାମିନୀପ୍ରଭ-ହେମପ୍ରବେଣୀମଣ୍ଡିତ- (୨)
କରିବୃନ୍ଦ, ମନ୍ଦ୍ରଘୋଷିଘନଘଟାକୃତି,
ତ୍ରାସେ ଥୋରପାର ଠେଙ୍କ, ଫିଙ୍ଗି ଆରୋହିଙ୍କ ,
ସ୍ୱଦଳ ବିପକ୍ଷଦଳ ଦଳି ନିର୍ବିଶେଷେ;
ଅସଂଖ୍ୟ ଯବନଯୋଧେ ହେଲେ ରଣଶାୟୀ,
କେତେ ଆର୍ଯ୍ୟ ବେନପକ୍ଷେ ଗଲେ ପ୍ରେତପୁରେ ,
କେ କଳିବ ? କେ ଗଣିବ ବରଷାର ଧାରା ?
ଅମୂଲ୍ୟ ଯେ ରକ୍ତ, ଅହା, ଦେଶରକ୍ଷାଲାଗି,
ବିଫଳେ ସ୍ରବିଲା ତାହା ଭ୍ରାତୃଘାତିରଣେ ! (୩)

---

( ୧ ) ବାହାବଳୀ—ଘୋଟକମାନଙ୍କୁ ।

( ୨ ) ବିଜୁଳି ପରି ଉଜ୍ଜ୍ୱଳ ସୁବର୍ଣ୍ଣାଭରଣ ଆବୃତ । ହସ୍ତିମାନଙ୍କ ସହିତ ମେଘର ଏବଂ ପ୍ରବେଣୀ ସହିତ ସୌଦାମିନୀର ଉପମା ।

( ୩ ) ଆର୍ଯ୍ୟମାନଙ୍କର ଉଚିତ ଥିଲା ଯେ ସେମାନେ ଏକତାବନ୍ଧନରେ ବଦ୍ଧ ହୋଇ ଜନ୍ମଭୂମିର ସ୍ୱାଧୀନତା ରକ୍ଷା ସକାଶ ସେମାନଙ୍କର ବହୁମୂଲ୍ୟ ଶୋଣିତ ପ୍ରଦାନ କରିଥାନ୍ତେ । ସେମାନେ ତାହା ନ କରି ଅପଣା



ଦେବାକୃତି ଦେବାନୀକ ହଂସପୁରପତି (୧)
ଶୁଆଇଲେ ଉତ୍କଯ୍ଟିନୀପତିଙ୍କି ଝଟତି
ଅସ୍ୱପ୍ନଭୂତଳେ ପରଶୁ-ଆଘାତେ; (୨)
ଅଞ୍ଜନ ଅଞ୍ଜନପ୍ରଭ ପଞ୍ଚାଳଭୂପତି (୩)
ଜୟଚନ୍ଦ୍ରପ୍ରିୟସଖା, ହେଲେ ଧରଶାୟୀ
ଚେଦିନାଥରୋହିତାଶ୍ୱ ବରଚ୍ଛିଦେଦନେ, (୪)
ଶସ୍ତ୍ର ଭୂସି ରୋହିତାଶ୍ୱ ଶତ୍ରୁନାଭିତଳେ
ଓଟାର ନେଲେ ତା ମୂନ ଶତ୍ରୁପ୍ରାଣ ସହ;
ବିକ୍ରମ କାଶ୍ମୀରପତି ଯୁଝିଲେ ବିକ୍ରମେ (୫)
ରଣଚଣ୍ଡ ବଙ୍ଗରାଜ ରଣଚଣ୍ଡ ତୁଲେ, (୬)
ରଣଚଣ୍ଡ-ଭଲ୍ଲ ତାଙ୍କ କର୍ଣ୍ଣମୂଳେ ପଶି
ଶୋଣିତଭବକା ସହ ଅଇଲା ବାହାର,
ତୁରଙ୍ଗୁ ବିକ୍ରମ ଖସି ଅଣ୍ତିଲେ ଅନ୍ତମେ

ଆପଣା ମଧ୍ୟରେ ହଣାହଣି ହୋଇ ସେହି ଶୋଣିତ ବୃଥା ବ୍ୟୟ କଲେ ।

( ୧ ) ଦେବାନୀକ—ମୂଲତାନର ଅଧୀଶ୍ୱର । ଯବନପକ୍ଷୀୟ ।
( ୨ ) ଅସ୍ୱପ୍ନଭୂତଳ—ଯେଉଁ ଶଯ୍ୟାରେ ନିଦ୍ରା ସ୍ୱପ୍ନଦ୍ୱାରା ଝୁଣ୍ଟିତ ହୁଏ ନାହିଁ । ମହାନିଦ୍ରାର ଶଯ୍ୟା ।
( ୩ ) ଅଞ୍ଜନ—ପଞ୍ଜାବର ରଜା, ଯବନପକ୍ଷୀୟ । ଅଞ୍ଜନପ୍ରଭ—କୃଷ୍ଣବର୍ଣ୍ଣ ।
( ୪ ) ରୋହିତାଶ୍ୱ—ଚେଦିରଜ, ଆର୍ଯ୍ୟପକ୍ଷୀୟ ।
( ୫ ) ବିକ୍ରମ—କାଶ୍ମୀରରଜ, ଯବନପକ୍ଷୀୟ ।
( ୬ ) ରଣଚଣ୍ଡ—ବଙ୍ଗଦେଶର ରଜା, ପୃଥ୍ୱୀପକ୍ଷୀୟ ।

ଭୂମିଶଯ୍ୟା, ଚନ୍ଦ୍ରାନନୀ-କାଶ୍ମୀରୀତରୁଣୀ—(୧)
ପରବର୍ତ୍ତେ ଶୋଧନୀ ଲଭି ଶଯ୍ୟାସଖୀରୂପେ ;
ରଣଚଣ୍ଡ-ଜୟହର୍ଷ ହେଲା କ୍ଷଣସ୍ଥାୟୀ,
ବନ୍ଧୁଜୀବପୁଷ୍ପପ୍ରାୟ-ରକ୍ତବିନ୍ଦୁ ସ୍ରାବୀ (୨)
ବିକ୍ରମର ମୁଣ୍ଡ ଊର୍ଦ୍ଧ୍ୱେ ତୋଳି ଭଲ୍ଲମୁନେ
ହଦମ୍ଭେ ଦେଖାନ୍ତେ, ତାଙ୍କ ମୁଣ୍ଡ ସେହିକ୍ଷଣି
ଭଲ୍ଲଲଗ୍ନ-ମୁଣ୍ଡ ସଙ୍ଗେ ଗଡ଼ିଲା ଭୂତଳେ
ବିକ୍ରମସୋଦର-କ୍ଷେମଧନ୍ୱା-ଖଡ୍ଗାଘାତେ; (୩)
ଅଙ୍ଗନାଥ ଯୁଧାଜିତ ଅକ୍ରମିଲେ ରୋଷେ (୪)
ମଦନସୁନ୍ଦର ଯୁବା ପ୍ରସେନ ପ୍ରବୀରେ , (୫)
ଜୟଚନ୍ଦ୍ରପୁତ୍ରବେନ, ରଥୀ, ରଥବାହୀ
ଏକା ରଥେ, ଏକମନା ଭିନ୍ନ ମାତ୍ର ଦେହେ ,
ଯୁଧାଜିତ କ୍ରୂରକୁନ୍ତ ସୁରୂପ-ନର୍ମ୍ମ,- (୬)
ସୁରୂପ ପ୍ରସେନବକ୍ଷେ ସ୍ତନୋପରେ ପଶି,

(୧) କାଶ୍ମୀରଦେଶୀୟ ନାରୀମାନେ ସୌନ୍ଦର୍ଯ୍ୟ ନିମନ୍ତେ ପ୍ରସିଦ୍ଧ ।
(୨) ବନ୍ଧୁଜୀବପୁଷ୍ପ ପରି ସୁନ୍ଦରରକ୍ତବିନ୍ଦୁ ଯେଉଁ ମୁଣ୍ଡରୁ ସ୍ରବୁଥିଲା ।
(୩) କ୍ଷେମଧନ୍ୱା—କାଶ୍ମୀରପତିଙ୍କ ଭ୍ରାତା, ଯବନପକ୍ଷଭୁକ୍ତ ।
(୪) ଯୁଧାଜିତ—ଅଙ୍ଗରାଜ, ଆର୍ଯ୍ୟପକ୍ଷୀୟ ।
(୫) ପ୍ରସେନ ଏବଂ ପ୍ରବୀର ଜୟଚନ୍ଦ୍ରଙ୍କ ପୁତ୍ର, ଏକ ଥରରେ ଜଣେ ରଥୀ
ଏବଂ ଜଣେ ସାରଥି ହୋଇ ଯୁଦ୍ଧ କରୁଥିଲେ ।
(୬) ସୁରୂପ-ନର୍ମ୍ମ—ସୌନ୍ଦର୍ଯ୍ୟପ୍ରତି ଯାହାର ଲେଶମାତ୍ର ମାୟା ମମତା
ନାହିଁ । କୁନ୍ତର ବିଶେଷଣ ।

ପୂଠିଲା ରକ୍ତାକ୍ତମୁନେ ପୃଷ୍ଠେ ଗ୍ରୀବା ତଳେ,
ବଲ୍‌ଗାଧାରୀ ପ୍ରବୀରଙ୍କୁ ଆବର ସ୍ୱେଷଣି (୧)
ଲୋଟାଇଲେ ଯୁଧାଜିତ ଭୂମେ ଅଧିରଥେ,
କାଷ୍ଠାଜୀବ ଯେହ୍ନେ ବନେ ପୁଷ୍ପିତ କିଂଶୁକେ; (୨)
ଶୈଳଖୋଲେ ଭ୍ରମୁଁ ଭ୍ରମୁଁ ମୃଗବ୍ୟାଧଶରେ ,
ହରିଣଶିଶୁକୁ ପଥେ ହର୍ଯ୍ୟକ୍ଷ ଯେପରି
ହାବୋଡ଼ି, କାମୋଡ଼ି ଦନ୍ତେ କ୍ଷୀଣ ପ୍ରାଣ ତାର
ଦିଏ ଛାଡ଼ି, ଅକ୍ଷମ ସେ ଶିଶୁର ରକ୍ଷଣେ
ଚାହେ ମୃଗୀ ସେହି ଦୃଶ୍ୟ ଗୁଳ୍ମତଳେ ଲୁଚି
ଦେଖୁଥାଇ ଥର ଥର ସ୍ୱିନ୍ନକଳେବରେ, (୩)
ପୁତ୍ରଙ୍କର ଏହି ଦଶା ଅଦୂରୁଁ ନିରେଖି
ରହିଲେ ତେସନେ ଉଗ୍ର କାନ୍ୟକୁବ୍ଜ-ପତି
ସ୍ତମ୍ଭୀଭୂତେ, ଶସ୍ତ୍ର ହସ୍ତେ, ଲୋତକ ନୟନେ;
ପୁଷ୍କଲାବତୀର ପତି ଶାମ୍ବ-ଶିରୋପରେ (୪)
ପ୍ରହାରିଲେ ମହାଗଦା ମହାଗଦାଧାରୀ
ଜଂଘାଳ ମାଳବରାଜ, ଯେ ଭୀମ ଆଘାତେ (୫)

(୧) ବଲ୍ଗୁ ଧାରୀ—ସାରଥି ।
(୨) କାଷ୍ଠାଜୀବ—କାଠ କାଟିବାର ଯାହାର ଜୀବିକା ।
(୩) ସ୍ୱିନ୍ନ—ସ୍ୱେଦଯୁକ୍ତ, ଘର୍ମାକ୍ତ ।
(୪) ଶମ୍ବ—ପୁଷ୍କଲାବତୀର ଅଧୀଶ୍ୱର, ଯବନପକ୍ଷୀୟ ।
(୫) ଜଂଘାଳ—ମାଳବପତି, ଆର୍ଯ୍ୟପକ୍ଷୀୟ ।






ଚୂର୍ଣ୍ଣ ହୋଇ ଶମ୍ବୁକଲ୍ପ ଶତ୍ରୁଶିରସ୍ତ୍ରାଣ (୧)
ଫାଟିଗଲା ଭାଲ-ଅସ୍ଥି, ପଡ଼ିଲା ବାହାର
ନୟନକୋଟରୁ ବେଗ ନୟନର ତାରା;
ନ ପାରଲେ ସଶିରସ୍କ ସ୍ୱଶିର ବଞ୍ଚାଇ
ଶାଲାତୁରପତି ଶଂଖ, ଅମୋଘନପାତ (୨)
ଉତ୍ରପତି ଯଯାତିର ଧୂପକଣ୍ଡା-ଶ୍ରେଷ୍ଠେ, (୩)
ଦ୍ୱିଧା ହୋଇ ମୁଣ୍ଡ, ଭଗ୍ନଦଧିଭାଣ୍ଡ ଯଥା,
ପଡ଼ିଲା ମସ୍ତିଷ୍କ ତଳେ ଥପ ଥପ ହୋଇ;
ବଙ୍ଗେଶ୍ୱର ଶାଲାଦିତ୍ୟ ଫିଙ୍ଗିଲେ ସାବେଳ (୪)
ତକ୍ଷଶିଳାପତିବକ୍ଷ ଲକ୍ଷି ମହାବଳେ, (୫)
ତକ୍ଷଶିଳାତାଲଗୁଡ଼ା ଭେଦ, ଲକ୍ଷି ହୋଇ
ଦୋହୋଳିଲା ଯେ ସାବେଳ, ଅକ୍ଷତେ ସେ ତହୁଁ
ଶାଲାଦିତ୍ୟ ପରେ ପଡ଼ି ବିଜୁଳୀର ବେଗେ
ଭୁସିଦେଲେ ତାଙ୍କ ଗଳେ ସୁତୀକ୍ଷ୍ଣ କଟାର,
ଖଣ୍ଡି ତାଙ୍କ ରଣକଣ୍ଡୁ ଚିରଦିନଲାଗି; (୬)
ମାତ୍ର ପ୍ରତିଶୋଧ ତାର ଲଭିଲେ ସେକ୍ଷଣି

(୧) ଶମ୍ବୁକଲ୍ପ—ବଜ୍ର ପରି କଠିନ ।
(୨) ଶଂଖ—ଲହୋରରାଜ, ଯବନପକ୍ଷୀୟ ।
(୩) ଯଯାତି—ଉତ୍କଳରାଜ, ଆର୍ଯ୍ୟପକ୍ଷୀୟ ।
(୪) ଶାଲାଦିତ୍ୟ – ବଙ୍ଗଦେଶର ରାଜା, ଆର୍ଯ୍ୟପକ୍ଷୀୟ ।
(୫) ତକ୍ଷଶିଳାପତି—ଯବନପକ୍ଷୀୟ ।
(୬) ରଣକଣ୍ଡୁ—ଯୁଦ୍ଧାଭିଳାଷ ।




ପୌଣ୍ଡ୍ରପତି ମହେନ୍ଦ୍ରର ବରକ୍ଷର ମୂଳେ, (୧)
ସେ ବରକ୍ଷ ତକ୍ଷଣିଲ ଚିବୁକପ୍ରଦେଶେ
ପଶି, ଲୋଟାଇଲା ତାଙ୍କୁ ଉତ୍ତାନେ ଭୂତଳେ
ଭକ ଭକ ରକ୍ତ ସ୍ରାବ ବୁଜିଲେ ସେ ଆଖି;
କୌଶେୟପ୍ରବର-ବଜ୍ରଘୋଷ-ଭଲ୍ଲପାତେ (୨)
କନଖଲପତିଙ୍କର ସ୍କନ୍ଧସନ୍ଧି ଛାଡ଼ି-(୩)
ଗଲା, ସେହ୍ଲା ସହ ସେନ୍ଧୁ ପଡ଼ିଲେ ଯୁଂଝନେ,
ବେଙ୍କଷଣ୍ଡା ହଙ୍ଗେ ଗଲା ଭଞ୍ଜଲୀଳା ଭାଙ୍ଗି;
ଅମ୍ବାଳସ୍ଥପତିଶିରୁ ଶିରସ୍କ ସୁନ୍ଦର, (୪)
କଣ୍ଠାରୁ ସେ ଶିର ପୁଣି ଲୋଟାଇଲେ ଭୂମେ
ଅମର୍ଷଅନୁଜ ଜିଷ୍ଣୁ ବେନ ଅରିଶ୍ରେଣେ; (୫)
ବାଲେନ୍ଦୁଲାଞ୍ଛିତ ଧ୍ୱଜ ପରେ ଲକ୍ଷ୍ୟ ରଖି
ଯୁଝିଲେ ସ୍ୱଦଳେ ପୃଥୁ, ଅରାତିପ୍ରମାଥୀ,
ଆର୍ଯ୍ୟତରକର୍ଣ୍ଣଧାର ସମରସାଗରେ;
ନର୍ତ୍ତିତକିରୀଟ-ଦେବ-କାର୍ତ୍ତିକପ୍ରତିମ, (୬)
ଅନବର୍ତ୍ତୀ ରଣେ, ସୈନ୍ୟେ ସଦା ଅଗ୍ରଯାୟୀ,

(୧) ମହେନ୍ଦ୍ର—ପୌଣ୍ଡ୍ର ରାଜ, ଆର୍ଯ୍ୟପକ୍ଷୀୟ ।
(୨) ବଜ୍ରଘୋଷ—ଆର୍ଯ୍ୟପକ୍ଷୀୟ ରାଜା ।
(୩) କନଖଲ—ହରିଦ୍ୱାରର ଅଦୂରବର୍ତ୍ତୀ । କନଖଲପତି—ଯବନପକ୍ଷୀୟ ।
(୪) ଅମ୍ବାଳସ୍ଥ—ଆଧୁନିକ ଅମ୍ବାଲା । ଅମ୍ବାଳସ୍ଥପତି—ଯବନପକ୍ଷୀୟ ।
(୫) ଜିଷ୍ଣୁ—ଅମର୍ଷର କନିଷ୍ଠ ସହୋଦର, ଆର୍ଯ୍ୟପକ୍ଷୀୟ ।
(୬) ଦୋଦୁଲ୍ୟମାନକିରୀଟ କାର୍ତ୍ତିକେୟଙ୍କ ପରି । ଅମର୍ଷର ବିଶେଷଣ ।

ପରପୁରଞ୍ଜୟୀ ଶୂର ଅମର୍ଷିର ଅଗ୍ନି
ଜ୍ୱଳିଲା ଜ୍ୱଳନ୍ତଚକ୍ର ପ୍ରାୟେ ସେ ସଂଗ୍ରାମେ
ସହସ୍ର ସହସ୍ର ଶତ୍ରୁ ଲୋଟାଇ ଭୂତଳେ,
ସକିରୀଟ କାହା ଶିରଃ, ସଶସ୍ତ୍ର କା ବାହୁ,
ସକଙ୍କଟ କାହା ଉରଃ, ସମେଖଳ କଟୀ (୧)
କାଟିଲେ କଦଳୀକାଣ୍ଡ ପ୍ରାୟେ କରବାଳେ
ଅଶ୍ୱବାର ମହାବୀର, ଛେଦିଲେ କାହାର
ଉପବୀତଛନ୍ଦେ ଦେହ, ସ୍କନ୍ଧୁ କଟିଯାଏ, (୨)
ଶ୍ମଶ୍ରୁଲ-ଯବନମୁଣ୍ଡ ଶତ ଶତ ଭୂମେ
ଗଡ଼ାଇ, ପୂଜିଲେ କି ସେ ରଣଚଣ୍ଡୀପଦ
ସରଘାମଣ୍ଡିତ ରକ୍ତକମଳକୁସୁମେ ? (୩)
ଊର୍ମ୍ମି ପରେ ଊର୍ମ୍ମି ଯଥା ଅମ୍ଭୋନିଧିକୂଳେ,
ଦଳେ ଦଳେ କଲେ ଆସି ସଦମ୍ଭେ ଚଢ଼ାଉ
ବୀରପରେ ଯବନର ବ୍ୟୂହିତ ବାହିନୀ,
ବୃଥାଶ୍ରମ ! ଗିରି କେବେ ଟଳଇ କି ଗାରେ
ତରୁଉନ୍ମୂଳନ ଝଂଝାବାତଧାର ଆଘାତେ ?
ବର୍ତ୍ତି ନ ପାରିଲେ କେହି ଅମର୍ଷିସମ୍ମୁଖେ

(୧) ସକଙ୍କଟ—କବଚଯୁକ୍ତ ।
(୨) ଦେହରେ ପଇତା ଯେଉଁ ଭାବରେ ପଡ଼ିଥାଏ ।
(୩) ସରଘାମଣ୍ଡିତ—ଶିଶୁଭ୍ରମରଯୁକ୍ତ । ଯବନମାନଙ୍କର ମସ୍ତକ ସହିତ କମଳର ଏବଂ ଶ୍ମଶ୍ରୁ ସହିତ ଭ୍ରମରର ଉପମା ।

ସେ ଭୀମ-ରୁଧିରବର୍ଷି-ରୋମହର୍ଷି-ବାଣେ, (୧)
ଶୋଭିଲେ ସେ ଅରିଦଳେ, ଗିରିବ୍ରଜେ ଯଥା
ବଜ୍ର, ତମଃପୁଞ୍ଜେ ତେଜଃ, ଔର୍ବ ସିନ୍ଧୁଜଳେ, (୨)
ଦାବାନଳ ତରୁଦଳେ, ବଇର କପୋତେ,
ବାସନା-ପ୍ରପଞ୍ଚେ ଜ୍ଞବା ବିବେକ ଯେସନେ; (୩)
କୃପାଣ-ମନ୍ଥନଦଣ୍ଡେ ଯବନ-ବାରିଧି
ମନ୍ଥି, ଯଶଃ-କଉସ୍ତୁଭ ଅର୍ଜିଲେ ସୁରଥୀ; (୪)
ତେଜଃପୁଞ୍ଜ-ଅଙ୍କାମିଳେ ଶୂଳର ପ୍ରାଚୀରେ
ରଖିଲେ ବୀରଙ୍କୁ ବେଢି ବଜ୍ରଦୁର୍ଗ ପ୍ରାନ୍ତେ,
ଉତ୍ତୋଳ ଶଳାକା ଯେହ୍ନେ କୁପିତ ଶଲ୍ଲକୀ; (୫)
ଯଥା ମହାନଦୀ ବନ୍ୟା ମହାବେଗେ ଆସି,
ମହାଶମ୍ଭୁସିଂହନାଥ-ଅଧିତ୍ୟକେ ପୂତ- (୬)

(୧) ରୋମହର୍ଷି-ବାଣେ—ଲୋମହର୍ଷଣକାରୀ ପ୍ରହାର ।
(୨) ଔର୍ବ—ବାଡ଼ବାନଳ ।
(୩) ବିବେକ ଅର୍ଥାତ୍ ଜ୍ଞାନୋଦୟ ହେଲେ ବାସନାସମୂହ ନଷ୍ଟ ହୁଏ ।
(୪) କୌସ୍ତୁଭ ସମୁଦ୍ରମନ୍ଥନରୁ ଉଦ୍ଭୂତ ହୋଇଥିଲା ।
(୫) ଶଲ୍ଲକୀ—ଝିଙ୍କ, କୁପିତ ହେଲେ ତାହାର ଶଳାକାମାନ ଉଦଣ୍ଡ ହୁଏ ।
(୬) ସିଂହନାଥ—ବାଙ୍କି ଅନ୍ତର୍ଗତ ବୈଦ୍ୟେଶ୍ୱର ସମ୍ମୁଖବର୍ତ୍ତୀ ଦ୍ୱୀପଶୈଳ । ଏହି ଶୈଳର ପାଦଦେଶରେ ସିଂହନାଥଙ୍କ ଦେଉଳ ପ୍ରତିଷ୍ଠିତ । ମହାନଦୀର ବନ୍ୟା ପଶ୍ଚିମରୁ ଆସି ଏହି ଶୈଳର ପ୍ରତିଘାତରେ କିଛି-ଦୂର ଉଜାଣି ପ୍ରବାହିତ ହୁଏ । ସେଠାରୁ ପୁଣି ଦ୍ୱିଧା ବିଭକ୍ତ ହୋଇ ଦୁଇ ପ୍ରବାହ ସିଂହନାଥ ଶୈଳର ଉଭୟ ପାର୍ଶ୍ୱ ଦେଇ ପୂର୍ବମୁଖରେ ପ୍ରବାହିତ ହୁଏ । ଏହି ପର୍ବତର ପ୍ରତିଘାତ ଯୋଗୁଁ ମହାନଦୀ ଏହି-ଠାରେ ଦ୍ୱିସ୍ରୋତା ।

ଦ୍ୱୀପଶୈଳକୂଳ ଭେଟି, ପ୍ରତିଘାତବଳେ
ପଛକୁ ନେଉଛି, ପୁଣି ବେଳ ଧାର ହୋଇ
ଗିର ବେଳପାଖେ ବହିଯାଏ ପୂର୍ବମୁଖେ,
ସମରେ ଦୁର୍ଦ୍ଧର୍ଷବୀର ଅମର୍ଷଅଗ୍ରତେ,
ପ୍ରତାପେ ତେସନ ତାଙ୍କ ଅସ୍ତବ୍ୟସ୍ତ ହୋଇ
ଦ୍ୱିଧା ହଦାରତ ହେଲ ଯବନବାହିନୀ
ପୁନଃପୁନଃ, ଦଳେ ଦଳେ ପଡ଼ି ରଣୋନ୍ମାଦେ;
ଅସିଅସ୍ଫାଳନବେଗେ ତାଙ୍କର ମୂରତି
ଦର୍ଶିଲା ପ୍ରବଷ୍ଟା କ ସେ ବିଦ୍ୟୁତପଞ୍ଜରେ, (୧)
ଜ୍ୱାଳାବଳି-ଜିହ୍ୱା ଗ୍ଡଳ ଗ୍ଡଲେ ଖରବେଗେ (୨)
ଦାବାନଳ, ନିରର୍ଗଳ ଯେହ୍ନେ ମହାବନେ, (୩)
ଗ୍ଡଲିଲେ ପ୍ରଚଣ୍ଡେ ସେହ୍ନେ ବୈରିଦଳ ଭେଦି,
ସହିଯା ସ୍ୱଦଳୁଁ ବୀର ବିଶ୍ଳିଷ୍ଟ ହୋଇଣ
ପଶିଲେ ଯବନବ୍ୟୂହେ, ଶତ୍ରୁଭଲ୍ଲାଘାତେ
ଗଳେ ବିଦ୍ଧ ହୋଇ ତାଙ୍କ ତୁରଙ୍ଗ ଏ କାଳେ,
ପଡ଼ିଲା ନିହତ ହୋଇ ରୁଧିର-କର୍ଦ୍ଦମେ,
ଅଶ୍ୱୁଁ ଡେଇଁପଡ଼ି, ବୀର ପଦାତିକରୂପେ
ଯୁଝିଲେ ଅଗତି ସଙ୍ଗେ ଅତୁଟ ସାହସେ,

( ୧ ) ଅତବେଗରେ ଅସିଅସ୍ଫାଳନ ଯୋଗୁଁ ଅମର୍ଷୀ ତଡ଼ିତପଞ୍ଜରମଧ୍ୟଗତ ପର ବୋଧ ହେଉଥିଲେ ।
( ୨ ) ଜ୍ୱାଳାବଳି-ଜିହ୍ୱା—ଜ୍ୱାଳାମାଳାରୂପ ରସନା ।
( ୩ ) ନିରର୍ଗଳ—ଅପ୍ରତିହତ ଗତ ।






ଲବ୍‌ଧହସ୍ତଯୋଗୁଁ ଶୋଭି ସେ ମହାବଙ୍କଠେ (୧)
ସର୍ବାଙ୍ଗେ ଆବୃତ ଯେହେ ନାଗ କରବାଳେ,
ଝଡ଼ିଲା ଯବନମୁଣ୍ଡ ସେ କୃପାଣଘାତେ
ଶତ ଶତ ପକ୍ୱପର୍ଣ୍ଣ ଶୀତାନ୍ତେ ଯେସନ,
କୃଷିବଲଦାତ୍ରେ ଅବା ପକ୍ୱଶସ୍ୟାବଳୀ (୨)
କୃଷିକ୍ଷେତ୍ରେ, କୃଷିବଲପ୍ରିୟ ଧନୁମାସେ, (୩)
ଶତପ୍ରସରଣେ ଏବେ ବେଢ଼ିଲେ ଅରାତି
ଅମର୍ଷିଙ୍କ, ଅର୍ଜ୍ଜୁନଙ୍କ ଯଥା କୁରୁଚମୂ, (୪)
କମ୍ବା ଦାବାନଳଚକ୍ର ଯଥା କେଶରୀଙ୍କ,
ମାତ୍ର ଭରସିଲେ ନାହିଁ ପାଖେ ପଶିବାକୁ
ମୂର୍ତ୍ତିମନ୍ତ କାଳପ୍ରାୟେ ତ୍ରାସେ ତାଙ୍କୁ ମଣି,
ମୂର୍ତ୍ତିମନ୍ତ କାଳ ପ୍ରାୟେ ଶାର୍ଦ୍ଦୂଳବଂଶର (୫)
ବାମଣ୍ଡାକୁମାର ବୁଧ-ଚକୋର-ଚନ୍ଦ୍ରମା,
ହେ ସଚ୍ଚିଦାନନ୍ଦ, ତୁମ୍ଭ ପାଦଧୂର ସ୍ଥଳୀ-

(୧) ଲବ୍‌ଧହସ୍ତ—ବେଗଗାମୀ ହସ୍ତ ।
(୨) କୃଷିବଳଦାତ୍ରେ—କୃଷକଙ୍କର ଦାଆରେ ।
(୩) ଧନୁ ଅର୍ଥାତ୍ ପୌଷ ମାସରେ ଧାନକଟା ଯୋଗୁଁ କୃଷକମାନଙ୍କ ଗୃହ ଶସ୍ୟରେ ପୂର୍ଣ୍ଣ ଥାଏ ।
(୪) କୁରୁସେନା ଚକ୍ରବ୍ୟୂହଦ୍ୱାରା ଅଭିମନ୍ୟୁକୁ ଯେପରି ବେଢ଼ିଥିଲେ ।
(୫) ବାମଣ୍ଡାଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ଯେମନ୍ତ ବଦ୍ୟାରସିକ, ମୃଗୟାରେ ସେହିପରି ସିଦ୍ଧହସ୍ତ ।




ଚୂଳିଆ-ଅଚଳଠୁଁ ଶାର୍ଦ୍ଦୂଳ ଯେସନେ (୧)
ଉତ୍କଳାନ୍ତେ ଶିକାରଲୋଭେ ବ୍ରାହ୍ମଣୀତୀରଭୂମେ,
ଚେଣ୍ଢା, ଏକମୁନା, ଟାଙ୍ଗି ଆଦି ଶସ୍ତ୍ର ଧରି
ବେଢ଼ନ୍ତି ଚୌଦିକେ ତାକୁ ମହିଷାଳେ ଯାଇ
ଦଳେ ଦଳେ, ମହୋତ୍ସାହେ, ମହାକୋଳାହଳେ,
ଅକ୍ଷୁବ୍ଧ ସେ ଆକ୍ରମଣେ, ନିର୍ଭୀକ ସ୍ୱଭାବେ,
ଉଭା ହୋଇ ଏକଠାବେ ରହେ ମହାବଳୀ
ମହାବଳ, ଅଚଳଦଳ ତୃଣ କରି ଗଣି,
ଫୁଲାଇ ତା ବପୁ କ୍ରୋଧେ, ରକ୍ତାକ୍ଷ ବୁଲାଇ
ଗର୍ଜ୍ଜୁଥାଏ କ୍ଷଣେ କ୍ଷଣେ ବଜ୍ରଧ୍ୱନି ହାଣି,
ମୁହୁର୍ମୁହୁ ଭୂମିତଳେ ଲାଙ୍ଗୁଳ କଚାଡ଼ି
ପ୍ରକଟି ଦଶନପାଟି ମାରଇ ହାକୁଟି,
ମହାକ୍ଷତ୍ରିୟ ସେ ଯେଣୁ, ପଛକୁ ହଟିବା, (୨)
ଅବା ଶଳ୍ୟକେ କେବେ ନ ବଳାଏ ମତି,
ତେସନେ ଅମର୍ଷିବୀର ପରପୁରଞ୍ଜୟୀ,
ଊର୍ଜ୍ଜସ୍ୱଳ ଜବା ବଳ ଦ୍ଧ ଶିକ୍ଷାକୌଶଳେ,

(୧) ଚୂଳିଅ ବା ମଣ୍ଡା ରାଜ୍ୟର ଗୋଟିଏ ଉଚ୍ଚ ପର୍ବତ, ବ୍ରାହ୍ମଣୀନଦୀର ଅଦୂରବର୍ତ୍ତୀ ।

(୨) ଜାଙ୍ଗଲପ୍ରଦେଶର ଲୋକେ ବାଘକୁ "ମହାକ୍ଷତ୍ରିୟ" ବୋଲନ୍ତି ।

ଶୋଭିଲେ ଅକ୍ଷୋଭେ, ସେହି ଅରି-ପରିବେଶେ; (୧)
ଆକ୍ରମଣେ ଅଗ୍ରସର ହୋଇ କେତେ ଶୂରେ
ଅଗ୍ରସର ହେଲେ ମାତ୍ର କୃତାନ୍ତସଦନେ,
ପ୍ରଦୀପର ଶିଖାସ୍ପର୍ଶେ ପତଙ୍ଗ ଯେପରି;
ଏକକ ସେ ଦିଶୁଥିଲେ ଅଯୁତ ପରାୟେ
ଶତ୍ରୁନେତ୍ରେ, ପ୍ରତିଜନେ ପ୍ରତଯୋଧରୂପେ; (୨)
ମହାଶୂଳୀ ଅଜାମିଲେ ପ୍ରାଣପଣେ ଯୁଝି,
ଶୂଳେ ଅରିପରେ ଅରି ପ୍ରେରି ପ୍ରେତପୁରେ
ଭେଦି ନ ପାରିଲେ ସେହି ଯବନ-ପାଚେରୀ
ଅଭେଦ୍ୟ, ଅଭେଦ୍ୟ ଯଥା କୁରୁଅନୀକିନୀ
ଚକ୍ରବ୍ୟୂହେସନ୍ନୀଭୂତ ଦ୍ରୋଣର ଭିଆଣେ; (୩)
ଢାଲେ ଢାଲ, ଭଲ୍ଲେ ଭଲ୍ଲ, କିରୀଟେ କିରୀଟେ,
କଙ୍କଟେ କଙ୍କଟେ ଛାନ୍ଦି ହୋଇ ସେ ପ୍ରାଚୀର
ଦିଶିଲା ଭାସ୍ୱର, ଯେହ୍ନେ ଶାରଦପ୍ରଭାତେ
ପ୍ରାଚୀପଟେ ରାଜେ ସ୍ୱର୍ଣ୍ଣବର୍ଣ୍ଣମେଘରାଜି

---

(୧) ଅରିପରିବେଶେ—ଶତ୍ରୁଚକ୍ର ମଧ୍ୟରେ ।

(୨) ଅମର୍ଷୀ ଏକା ହୋଇ ସୁଦ୍ଧା ଦଶସହସ୍ର ପ୍ରାୟ ବୋଧ ହେଉଥିଲେ । ପ୍ରତ୍ୟେକ ଯୋଦ୍ଧା ତାହାଙ୍କୁ ଆପଣାର ପ୍ରତିଯୋଦ୍ଧା ମଣିଲା ।

(୩) ଦ୍ରୋଣାଚାର୍ଯ୍ୟଙ୍କର ଚକ୍ରବ୍ୟୂହରଚନା ପ୍ରସଙ୍ଗ ମହାଭାରତରେ ଅନୁସନ୍ଧେୟ ।

ତମୋଜସ୍ୱୀ ତପନର ଉପକାର୍ଯ୍ୟାରୂପେ, (୧)
ଲମ୍ବା ବହ୍ନିଅସ୍ତରଣ ଯେସ୍ନେ ବେଣାବନେ
ଆଲୋକେ ଯା ଶୀତଋତ୍ତେ କନକାଅଞ୍ଚଳେ
ମୃଗସ୍ପଦ କଚ୍ଛଭୂମି ଲବଣସୈନ୍ଧବୀ (୨)
ଦିଗ୍‌ବାରଣରୂପେ ସେବ ସିନ୍ଧୁବାହିନୀବେ; (୩)
ଅମର୍ଷିଙ୍କି ଦେଖି ଘୋରବିପଦକବଳେ,
ପରନ୍ତପପୃଥୁ ଦେଲେ ଦୂରୁଁ ଝମ୍ପଠାଇଁ
ଅଶ୍ୱବର, ପୃଥୁ ସଙ୍ଗେ ଆସିଲେ ଦଉଡ଼ି
ଅଙ୍ଗଦେଶିସ୍ଥାଦଦଳ ବିଜୁଳୀର ବେଗେ,
ଘର୍ଘରେ ଚଳାଇ ରଥ ଦିଲ୍ଲୀପୁରୀରଥୀ
ଆସିଲେ, ରଥାଙ୍ଗେ ବେଗେ ରକ୍ତ ଛିଟକାଇ (୪)

---

(୧) ତମୋଜସ୍ୱୀ ସୂର୍ଯ୍ୟଦେବଙ୍କର ତମ୍ବୁସ୍ୱରୂପ ଯେଉଁ ସ୍ୱର୍ଣ୍ଣବର୍ଣ୍ଣ ମେଘମାଳା ଶରତ୍ପ୍ରଭାତରେ ପୂର୍ବଦିଗରେ ଶୋଭା ପାଏ, ଅଗ୍ନ୍ୟୋଜ୍ଜ୍ୱଳ ଯବନପ୍ରାଚୀର ସେହିପରି ଦିଶୁଥିଲା ।

(୨) କନକା ଅଞ୍ଚଳରେ ସମୁଦ୍ରତଟରେ ଦୂରରେ ବହୁଦୂର ବ୍ୟାପି ବେଣାବନ ଦେଖାଯାଏ । ଏହି ବେଣାବନରେ ଅସଂଖ୍ୟ ହରିଣ ଦେଖାଯାନ୍ତି । ଶୀତ ଋତୁରେ ଏହି ବେଣାବନରେ ଅଗ୍ନି ଲଗି ବହୁକୋଶବ୍ୟାପୀ ଅଗ୍ନିପ୍ରାଚୀରବତ୍ ଦିଶେ । ଲବଣସୈନ୍ଧବୀ—ଲବଣସିନ୍ଧୁସମ୍ବନ୍ଧୀୟ, କଚ୍ଛଭୂମିର ବିଶେଷଣ ।

(୩) ନାବିକମାନେ ସମୁଦ୍ରରେ ଏହି ଅଗ୍ନିପ୍ରାଚୀର ଦେଖି ସମୟ ସମୟରେ ଦିଗ ନିରୂପଣ କରନ୍ତି ।

(୪) ରଥାଙ୍ଗେ—ରଥଚକ୍ରଦ୍ୱାର ।

## ସପ୍ତମ ସର୍ଗ ।

କବନ୍ଧ-ବନ୍ଧୁରପଥେ; ପୃଥୁଙ୍କ ସଙ୍କେତେ, (୧)
ଆସିଲେ ସୈନ୍ଧବଚମୂ ମନୋରଥଗତି,
ପିତ୍ତଳବର୍ମ୍ମିତ ବସ୍ତ୍ରଦେଶୀ-ଅଶ୍ୱବାରେ
ତୀକ୍ଷ୍ଣଭଲ୍ଲଧାରୀ ଖରେ ମିଳିଲେ ତକ୍ଷଣେ,
କାଶ୍ମୀରୀ ସନ୍ଧିତେ ଯୁଝୁଥିଲେ ଯେ ଅଦୂରେ,
ସୌରସେନୀ ଶୂରବୃନ୍ଦ ଆସିଲେ ଦଉଡ଼ି,
ମତ୍ତମତଙ୍ଗଜେ ଚଢ଼ି ଆସିଲେ ନେପାଳୀ,
ସମରତରଙ୍ଗ ଏବେ ଦ୍ୱିଗୁଣେ ଉଚ୍ଛୁଳି
ଭସାଇଲା ରଙ୍ଗେ ତହିଁ ଚତୁରଙ୍ଗ ସେନା,
ବ୍ୟାଧଜାଲେ ଶିଶୁ ଦେଖି ବାଘୁଣୀ ଯେସନେ,
ମହାବେଗେ ଗର୍ଜ୍ଜି ଆର୍ଯ୍ୟ ପ୍ରଚଣ୍ଡବିକ୍ରମେ
ନୀରନ୍ଧ୍ର ସେ ଶତ୍ରୁଦଳ ପକାଇଲେ ଘାଣ୍ଟି, (୨)
ଅଗ୍ରସର ହୋଇ ଯେତେ ଯବନ ସାହସେ
ଓଗାଳିଲେ ବାଟ, ପଡ଼ି କାମୋଡ଼ିଲେ ମାଟି;
ମୁହୂର୍ତ୍ତେ ଯବନବ୍ୟୂହ ବୀରେନ୍ଦ୍ରକେଶରୀ
ଭେଦି ଆର୍ଯ୍ୟସେନାନୀଙ୍କ ଉଦ୍ଧରିଲେ ତହୁଁ
କରବାଳେ ବାଟ କାଟି ପୃଥୁ ପୃଥୁଯଶା,

---

(୧) କବନ୍ଧବନ୍ଧୁରପଥେ—ଶବବନ୍ଧୁର ମାର୍ଗରେ ।

(୨) ନୀରନ୍ଧ୍ର—ଅତି ନିବିଡ଼ ।

ସେ ରଣଶୋଣିତପଙ୍କ-ପିଚ୍ଛିଳ-ପ୍ରାଙ୍ଗଣେ; (୧)
ସେ ସଙ୍କଟୁ ମୁକ୍ତ ହୋଇ ଶୋଭିଲେ ସେନାନୀ
ମେଘମୁକ୍ତ ଶଶୀ ଯଥା, ଶୀତାନ୍ତେ ଅଥବା
ନିର୍ମ୍ମୋକନିର୍ମ୍ମୁକ୍ତ ଯଥା ଊର୍ଦ୍ଧ୍ୱଫଣା ଫଣୀ; (୨)
ବାୟୁକୁ ସାରଥି ପାଇ ବିଭାବସୁ ପ୍ରାୟେ (୩)
ଝପିଲେ, ଅମର୍ଷୀ ପୃଥୁ ଯୁଝି ଏକ ସ୍ଥାନେ,
ହୁଙ୍କାର ବେନିଏ ହେଲେ ବଇରିବିଭ୍ରାଟେ, (୩)
ଝିକନ୍ତ ଯବନଥାଟ ହଟିଲା ସତ୍ରାସେ
ଉତ୍‌କେଶର ହରି-ଆଗେ କରିପଲ ପ୍ରାୟେ, (୪)
ଭଙ୍ଗ ଦେଲା ଠାବେ ଠାବେ ଯବନପୃତନା,
ପଚ୍ଛଫଲାସ୍ତ୍ରକବୃନ୍ଦେ ପଛୁଁ ହାଣି ହାଣି,
ଦୁର୍ଦ୍ଦିନ ଭିଆଇ ତାଙ୍କ ରୁଧିର-ଆସାରେ, (୫)
ଭଜି ନେଇଗଲେ ବୈରିଦଳ ବେନିବୀରେ
ମହାବାତ୍ୟା ଯଥା, ଅମା-ଶୌରି-ସ୍ୱାତି-ଯୋଗେ, (

---

(୧) ରକ୍ତପିଚ୍ଛିଳ ରଣଭୂମି ।
ନିର୍ମ୍ମୋକନିର୍ମ୍ମୁକ୍ତ—କାତି ଛାଡ଼ିଥିବା ।
(୨) ବିଭାବସୁ—ଅଗ୍ନି ।
(୩) ବୈରିବିଭ୍ରାଟେ—ଶତ୍ରୁମର୍ଦ୍ଦନରେ ।
(୪) ଉତ୍‌କେଶର ହରି—ସ୍ଫୀତକେଶର ସିଂହ ।
(୫) ଦୁର୍ଦ୍ଦିନ—ବର୍ଷାଦିନ । ରୁଧିର-ଆସାରେ—ରକ୍ତବୃଷ୍ଟିରେ ।
(୬) ଅମାବସ୍ୟା, ଶନିବାର, ସ୍ୱାତିନକ୍ଷତ୍ର ଏ ତିନିଙ୍କର ଏକ[illegible]
ମହାବାତ୍ୟାସୂଚକ ।